# ସିନ୍ଦୁରଯା ଗୁରେସିଂ



ପଦ୍ମଲୋଚନ କବିରାଜ

# ସିନ୍ଧୁରଥ୍ୟା ଝୁରେସିଂ

## ପଦ୍ମଲୋଚନ ଗ୍ରନ୍ଥମାଳା



ପଦ୍‌ମଲୋଚନ କବ୍ରାଜ

ସିନ୍ଦୂରପା ଗୁଡରସିଂ--

ପ୍ରଣେତା—ଆର୍ଯ୍ୟପଦ୍ମ ପଣ୍ଡିତ ଶ୍ରୀ ପଦ୍ମଲୋଚନ ମିଶ୍ର
ଜ୍ୟୋତିର୍ବିଦ୍ୟା ବାଚସ୍ପତି
କବି, କବିରାଜ (ରେଜିଷ୍ଟ୍ରାର୍ଡ ନମ୍ବର ୧୩୧୨)
ଭୁବନେଶ୍ୱର

ପ୍ରକାଶିକା—ଶ୍ରୀମତୀ କଶୋରୀ ଦେବୀ
କ୍ୱାର୍ଟର ନମ୍ବର ୧୫୧
ପୋଷ୍ଟ ଏଣ୍ଡ ଟେଲିଗ୍ରାଫ୍ କଲୋନୀ ୟୁନିଟ-୪
ଭୁବନେଶ୍ୱର

ପ୍ରଥମ ପ୍ରକାଶ—ଅକ୍ଷୟ ତୃତୀୟା, ୧୯୮୪

ମୁଦ୍ରକ— ସାଇ ମୁଦ୍ରଣୀ
ଭୁବନେଶ୍ୱର

ଦକ୍ଷିଣା— ଦୁଇଟଙ୍କା ପଚାଶ ପଇସା ମାତ୍ର



**SINDURPA GURASING**

Author—Arya Pandit Sri Padmalochan Mishra
Jyotrividya Bachaspati
Kavi-Kaviraj (Regd No. 1312)
Bhubaneswar

Published by—Smt. Kishori Devi
Qr No 151 P & T Colony
Unit IV, Bhubaneswar

First Publication—**Akhaya Trutiya, 1984**

Printed at—**Sai Mudrani**
Bhubaneswar

Price— **Rs. 2-50**

# — ଅଭିମତ —

ବନ୍ଧୁ ଶ୍ରୀ ପଦ୍ମଲୋଚନ ମିଶ୍ର ଏକାଧାରରେ କବି ଓ କଥାକାର । ତାଙ୍କର ପ୍ରାୟ ପ୍ରତ୍ୟେକ ଗଳ୍ପ କାହାଣୀ—ସମୃଦ୍ଧ, ମନକୁ ଛୁଏଁ ପାଠକକୁ ଅଭିଭୂତ କରେ । "ସିନ୍ଦୁରପା ଗୁରେ ସିଂ" ସେହିପରି ଏକ କାହାଣୀ—ସମୃଦ୍ଧ ଦୀର୍ଘ ପ୍ରେମ ଗଳ୍ପ, ଏକ କିମ୍ବଦନ୍ତୀ ଉପରେ ଆଧାରିତ । ଐଶ୍ବର୍ଯ୍ୟଶାଳୀ ପିତାର ଏକମାତ୍ର କନ୍ୟା ସିନ୍ଦୁରପା, ସଂଗୀତରେ ପ୍ରବୀଣା । ସଂଗୀତରେ ସେ ଅଜେୟା, ପରାଜୟ ତାର ଜାତକରେ ନାହିଁ, ଏଇ ଗର୍ବର ଆତ୍ମ ବିଶ୍ୱାସ ନେଇ ସେ ସଦା କଲ୍ଲୋଳ-ମୟୀ । ମାତ୍ର ଗୁରେ ସିଂର ଶିଂହାର ଧ୍ୱନିରେ ସଂଗୀତ ପ୍ରବୀଣା ନିଜର ନିଶ୍ଚିତ ପରାଜୟ ଅନୁଭବ କରି ପାରିଥିଲା । ଗୁରେ ସିଂ ଯୋଗୀ, ମାତ୍ର ସେଇ, ପରାଜୟର ଅନୁଭବ ମଧ୍ୟରେ ସେ ଗୁରେ ସିଂକୁ ପ୍ରାଣର କରି ନେଇଥିଲା । କିନ୍ତୁ ପ୍ରାସାଦବାସିନୀ ରାଜକନ୍ୟା ସହ ପଥଗୃହୀ ଯୋଗୀର ମିଳନ କଣ ସମ୍ଭବ ? ସମ୍ଭବ ହୋଇ ନ ଥିବାରୁ ଶ୍ରୀଯୁକ୍ତ ମିଶ୍ରଙ୍କର ଏ କାହାଣୀ ଏତେ ହୃଦୟ-ସ୍ପର୍ଶୀ ହୋଇ ପାରିଛି । ସାବଲୀଳ ଭାଷାର ପ୍ରବାହରେ ଭାବକୁ ନେଇ ପାଠକ ଭାସିଯାଏ ଅତୀତକୁ ! ଅତୀତ କିଛିକ୍ଷଣ ଲାଗି ବର୍ତ୍ତମାନ ହୋଇଯାଏ ।

କାହାଣୀ ଅନ୍ତରସ୍ଥ କେତୋଟି ପଂକ୍ତି ଏଠାରେ ଉଦ୍ଧାର କରିବାର ମୋହ ସଂବରଣ କରିପାରୁନି ।

"ଗୁରେ ସିଂ ଠିକ୍ ଠିକ୍ ଶିଂଘା ବଜାଏ, ସେ ହାରେନା, ଶିଂଘା ବାଜେ ନଈକୂଳେ, ଶିଂହା ବାଜେ ତୋଟା ମୂଳେ, ଶିଂଘା ବାଜେ

ଶିଖଣ୍ଡିରେ···ଆଉ ସୁର ଦଏ ସୁନ୍ଦରପା"

'ମାଳାକାରୁ' ପଗ୍ଭରିଲା ତୋର ଗାନ, ତୋର ତାନ ଏକ, ତୋ ଆଖି ତା' ଆଖି ମଧ୍ୟ ଏକ, ତୁ ଭୂମିରେ ଗାର ଟାଣୁଥିଲୁ, ଆଉ ଯେ କଣ କରୁଥିଲ ? ଶିଂପା ଜୋରରେ ଧରିଥିଲା କାଲେ ଖସି ପଡ଼ିବ । '

ଆବେଗ ଓ ମନସ୍ତତ୍ୱ ଲାଗି ରହିଛି ଉଲ୍ଲିଖିତ ପଂକ୍ତି କେତୋଟିରେ । ପାଠକମାନେ "ସିନ୍ଧୂରପା ଗୁଚ୍ଛରେ ସିଂ" ପଢ଼ନ୍ତୁ ଓ ରସାସ୍ୱାଦନ କରନ୍ତୁ ତଦ୍ୱାରା ହିଁ କେବଳ ମୋର ବନ୍ଧୁ ଶ୍ରୀଯୁକ୍ତ ମିଶ୍ରଙ୍କର ଲେଖନୀ ସାର୍ଥକ ହେବ ।

ଭୁବନେଶ୍ୱର
ତା ୨୭ । ୭ । ୮୪

**ବିଜୟ କୃଷ୍ଣ ମହାନ୍ତି**

# — ସ୍ୱଗତ —

ମୁଁ କିଛୁ ଲେଖେ, ପିଲାଟି ଦିନରୁ ଲେଖେ ପ୍ରତ୍ୟହ କିଛୁ ନା କିଛୁ ପଦେ ଅଧେ ଲେଖିବା ମୋର ଇଚ୍ଛା ଏବେ ସୁଦ୍ଧା ତାହା ରହିଛି । ଏହି ଇଚ୍ଛା ଭିତରେ ଜ୍ଞାତ ସାରରେ ହେଉ ବା ଅଜ୍ଞାତ ସାରରେ ହେଉ କେତେ ନୂଆଁ କଥା ଗୁଡ଼ିକୁ ସୃଷ୍ଟି ହୋଇଯାଏ । ଏହି ସୃଷ୍ଟି ମଧ୍ୟରେ ସାହିତ୍ୟ, ଜ୍ୟୋତିଷ, ଆୟୁର୍ବେଦ, ତନ୍ତ୍ର, ଯୋଗ କଥା ଆଦି ଚଉଷଠି ଖଣ୍ଡ ଗ୍ରନ୍ଥ ମୂଲ୍ୟାୟନରେ ରଚନା ପୁସ୍ତକ ରହିଛି । ତନ୍ ମଧ୍ୟରୁ ପରିବେଶ ଅନୁଯାଇ ଶ୍ରେଷ୍ଠ ବଡ଼ ଏଗାର ଖଣ୍ଡ ପୁସ୍ତକ-ପୁସ୍ତିକା ବିଗତ ତିନି ଦଶନ୍ଧି ମଧ୍ୟରେ ପ୍ରକାଶ ପାଇଛନ୍ତି, ଆଉ ଅବଶେଷ ଯାହା ରହିଅଛି ମୋ ଜୀବ ଦଶାରେ, ତନ୍‌ମଧ୍ୟରୁ କେଇ ଖଣ୍ଡ ମାତ୍ର ଲୋକ ଲୋଚନକୁ ଆସିବେ ବୋଲି ଆଶା କରେ ।

ସାହିତ୍ୟ ବିଭାଗରେ ରଚିତ କାବ୍ୟ, କବିତା, ଗଳ୍ପ-ଉପନ୍ୟାସ, ପ୍ରବନ୍ଧ ପ୍ରତ୍ୟେକ ଶ୍ରେଣୀରୁ ମଧ୍ୟ ବହୁ ଗ୍ରନ୍ଥ ମୁଦ୍ରଣକୁ ଅପେକ୍ଷା କରିଛନ୍ତି । ନିକଟରେ ଖଣ୍ଡେ କାବ୍ୟଗ୍ରନ୍ଥ "ଭ୍ରମିମା ବୈଶାଳୀମା" ନାମରେ ପ୍ରକାଶ ପାଇଅଛି । ଆଜି ବହୁ ଦିନ ତଳର ଏକ ରଚନା "ଗଳ୍ପ ସଂଚୟନ" ସନ୍ଧାନ ସାତ କଥାରୁ ଗୋଟିଏ ମାତ୍ର ଗଳ୍ପ "ସିନ୍ଦୂରପା ଗୁରେସିଂ"କୁ ପ୍ରକାଶ କରିବାକୁ ଯାଉଛି । ମୋର ମନେ ଅଛି ଏ "ଗଳ୍ପ ସଂଚୟନ" ସନ୍ଧାନ ସାତ କଥାର ଗୋଟିଏ ମାତ୍ର ଗଳ୍ପ । ଜୀବନର ବିଭିନ୍ନ ସମୟରେ ରଚିତ ହୋଇଥିଲେ ମଧ୍ୟ ଏହି ଗଳ୍ପଟି ୧୯୫୭ ମସିହା ଯୁନ-ଯୁଲାଇ ମାସରେ କଟକରେ ଥିବା ଅବସ୍ଥାରେ ରଚିତ । ଏହି ସନ୍ଧାନ ସାତ କଥାର ଅନ୍ୟ ଛଅଟି ଗଳ୍ପ— ୧-ଲଗ୍ନ ସନ୍ଧିରେ,

୨-ଭିତାଘର, ୩-ଢ଼ିଲ ସେକସନ୍, ୪-ଶ୍ରେଷ୍ଠି ଅମୃ ଶ୍ରେଷ୍ଠି ମା, ୫-ସୁନ୍ଦରସା ଚନ୍ଦେଲା, ୬-ମହନ୍ତ ମହାରାଜ। ଏମାନେ ସନ୍ଧାନ ଧର୍ମୀ ଅଟନ୍ତି। ଏ ଗଳ୍ପ ପ୍ରକାଶନର ପରବର୍ତ୍ତୀ ପଦକ୍ଷେପରେ ଏମାନେ କ୍ରମଶ ପ୍ରକାଶିତ ହେବେ ବୋଲି ଆଶା। ଏହାପରେ ମଧ୍ୟ ଅନ୍ୟ ଏକ ଗଳ୍ପ "ସଚସ୍ୱନ" ସୁନ୍ଦର କଥା ସାର ନାମରେ ସାତୋଟି ଗଳ୍ପର ଏକ ସମାହାର ରହିଅଛି। ୧-ଭିକ୍ଷାର୍ଥିନୀ, ୨-ଦେବଦାସ, ୩-ସାଧୁ ସଙ୍ଗ, ୪-ଚନ୍ଦ୍ରହାସ, ୫-ଶତରୂପା, ୬-ଦେବତାର ସାକ୍ଷାତ, ୭-ମହାତ୍ମାଙ୍କ କୃପା। ଏମାନେ ମଧ୍ୟ ନିଜ ଭାବରେ କିଛି କହନ୍ତି ବୋଲି ମନେ ହୁଏ। ଏମାନଙ୍କ ମଧ୍ୟ ଅନ୍ୟ ଏକ ପଦକ୍ଷେପରେ ପାଠକଙ୍କ ସମ୍ମୁଖକୁ ଆଣିବାର ପ୍ରୟାସ ରହିଛି। କଥାଶୃଙ୍ଖଳ ଯଥାର୍ଥ ଗଳ୍ପଧର୍ମୀ ହେଲେ ମଧ୍ୟ କ୍ଷୁଦ୍ର ଗଳ୍ପ ଯୋଜନରେ ନ ଥିବାରୁ ସନ୍ଧାନ ମାତକଥା ବା ସୁନ୍ଦର କଥା ସାର ଆଦିଙ୍କୁ ସ୍ୱତନ୍ତ୍ର ଏକ ଏକ ପୁସ୍ତକରେ ପ୍ରକାଶ କରିବା ଅର୍ଥ ସାପେକ୍ଷ ହେଲା। କୌଣସି ଗଳ୍ପ ୪୦/୬୦ ପୃଷ୍ଠାରୁ କମ ନୁହନ୍ତି, ଏପରି ହେଲେ ପ୍ରତି ଗଳ୍ପ ଏକ ପୁସ୍ତିକାରେ ପ୍ରକାଶ କରିବାକୁ ମନସ୍ଥ କରି ଆଜି ପ୍ରଥମ ପ୍ରୟାସରେ "ସିନ୍ଦୁରପା ଗୁଡେସିଂ"କୁ ମୁଦ୍ରଣ ପାଇଁ ପ୍ରସ୍ତୁତ କଲି। ପୂର୍ବରୁ କହିଛି ଗଳ୍ପଟି ସନ୍ଧାନ ଧର୍ମୀ...। ସମ୍ବଲପୁର ସଦର ସବ୍‌ଡିଭିଜନରେ ପୁରୁଣା ସମ୍ବଲପୁର ଝାରସୁଗୁଡା ରୋଡ଼ ଉପରେ "ଗୁଡ଼େ ସିଂହ" ବୋଲି ଏକ ଗ୍ରାମ ମାଳତୀ ନଦୀ କୂଳରେ ଅଛି। ଏହି ଗ୍ରାମ ଉପରେ ଆଧାରିତ ଏକ ଆଖ୍ୟାୟିକାକୁ ନେଇ ଏହା ଏକ ସନ୍ଧାନୀ ଗଳ୍ପ ଭାବରସର ମୁଗ୍ଧ ପ୍ରେମ କାହାଣୀ। ଜୀବନର ବସନ୍ତ ବେଳାରେ କଅଁଳ ତରଳ ମନରେ ରସ ମନ୍ତ୍ରମୋହନ ଥିଲା ବେଳର ଏ ଗଳ୍ପ ମାଳାରୁ ଏକ ତରୁଣ ତରୁଣୀ ସମବେଦନଶୀଳ ସାବଲୀଳ ପ୍ରେମରସର ଏକ ମୂର୍ତ୍ତିମନ୍ତ ରସ ଚନ୍ଦ୍ର ଆଙ୍କିଥିଲି। ଦୀର୍ଘ ୨୮ ବର୍ଷ ପରେ ଏହାର ପ୍ରକାଶ ନିଶ୍ଚୟ ଏକ କୁତୁହଳ ସୃଷ୍ଟି କରିବ। ଏମାନେ କେତେ ଆଗରୁ ,,ସଦାକୁ ଆସିଥାନ୍ତେ ମାତ୍ର ସମ୍ବଲ ପ୍ରଭଦନ୍ଦକ ଏମାନଙ୍କୁ ପେଡିରେ ସାଇତି ରଖିଥିଲି। ଗୋଟିଏ ଗୋଟିଏ ବାହାରିବେ ବୋଲି ଉଚ୍ଛନ୍ନ ହେବାରୁ

ଗୋଟିଏ ଆଣି ଆଜି ଥୋଇଲି ।

ମୋର ବନ୍ଧୁ ଶ୍ରୀ ବିଜୟ କୃଷ୍ଣ ମହାନ୍ତି ଓଡ଼ିଶାର ଜଣେ ପ୍ରବୀଣ କଥାକାର···ବିଶିଷ୍ଟ ଗାଳ୍ପିକ ତାଙ୍କ ଲେଖନୀରୁ ପଦେ ଏହି ରଚନା "ସିନ୍ଦୂରପା ଗୁରେ ସିଂ" ଉପରେ ରହିଛି ଏହା ମୋ ସୌଭାଗ୍ୟ—ବନ୍ଧୁ କଥାକାର ରଚନାଟିକୁ ଆମୂଳଚୂଳ ପାଠ କରି ଗଳ୍ପଟି ଉପରେ ଯେଉଁ ମତଦାନ କଲେ ତହିଁରେ ପାଠକ ବର୍ଗ ମୋ ଲେଖା ପ୍ରତି ନିଶ୍ଚିତ କାଙ୍କ୍ଷିତ କୃପା ଦୃଷ୍ଟିପାତ କରିବେ ବୋଲି ଆଶା ପୋଷଣ କରେ । ଲେଖକ ଲେଖିଗଲେ ଲେଖା ଚରିତାର୍ଥ ହୁଏ ନାହିଁ, ଲେଖାଟିକୁ ପାଠକ ମନଭରି ପଢ଼ିଲେ ଲେଖକ କୃତାର୍ଥ ହୋଇଥାଏ । ମୋ ଲେଖାଟିକୁ ପ୍ରତ୍ୟେକେ ମନଭରି ପଢିବେ ଓ ଭାବରସ କିଛି "ଶାଶୁଙ୍କ" ଯାହା ରଖିଛି ତାହା ଉପଭୋଗ କରିବେ ଏହା ମଧ୍ୟ ଆଶା ରଖିଛି । ବନ୍ଧୁ ଶ୍ରୀ ବିଜୟ କୃଷ୍ଣ ମହାନ୍ତି ନିଜ ଗୁଣରେ ଗୁଣୀସ୍ଥାନ ହୋଇ ଲେଖାଟି ଉପରେ ଯେଉଁ ରେଖାପାତ କରିଛନ୍ତି ଏଥି ନିମିତ୍ତ ତାଙ୍କ ନିକଟରେ କୃତଜ୍ଞ ରହିଲି ।

ଉତ୍କଳ ଭାରତୀ ଜୟ ହେଉ ।

ବିନୀତ

ତା ୧-୭-୧୯୮୪ ପଦ୍ମଲୋଚନ କବିରାଜ

ଭୁବନେଶ୍ୱର

# ସିନ୍ଦୁରପା ଗୁଡେରସିଂ

## ଏକ

ଶୁଣିବାକୁ ଯଦି ଇଚ୍ଛା ତେବେ ଥୟ ହୋଇ ବସ । ଏହା ଗୋଟିଏ ଶ୍ରେଷ୍ଠ କାହାଣୀ । ପଦେ ଦ'ପଦରେ ଏହା ସରିବାର ନୁହେଁ । ଏ ଗପଟି ଅସଲ ଗପ ହେଲେ ବି ସତ । ଏ ଯେଉଁ ବିରାଟ ପଦ୍ମପୋଖରୀଟି ଦେଖୁଛ ଏହାକୁ "ପଦ୍ମତୁଳା" କହନ୍ତି । ଏହା ଗୋଟିଏ ମାତ୍ର ମାଟିବନ୍ଧ ପଡ଼ି ହୋଇଛି । ସେ ଯେଉଁ ସୁନ୍ଦର ପାହାଡ଼ ପୂର୍ବରୁ ପଶ୍ଚିମକୁ ଲମ୍ବିଛି, ତାହାର ଗଡ଼ାଣିଆ ପାଣି ପୋଖରୀରେ ବର୍ଷ ସାରା ଜମାହୁଏ । ପାଣି ଅଭାବରେ ବନ୍ଧ କାଟି ତଳା ଏ ଯେଉଁ ବିରାଟ ବିଲ ମାଳ ଦେଖୁଛ ତହିଁରେ ପାଣି ମଡ଼ାନ୍ତି । ହେଇ ଦେଖ କେଉଁ ଅଜଣା କନ୍ଦରରୁ ଗିରି ନଦୀଟିଏ ତେଇଁ ତେଇଁ ତଳକୁ ଗଡ଼ିଯାଉଛି । ଏ ନର୍ତ୍ତକୀକୁ କଣ କହନ୍ତି ଜାଣ, ଏହାର ନାମ ମାଲ୍‌ତୀ··· । ଏଠାରୁ ଠିକ୍ ଛଅ କୋଶ ଦୂରେ ତଳେ ଏ ନଦୀ ମହାନଦୀରେ ନିଜକୁ ମିଶାଇ ଦେଇଛି । ଏହି ପୋଖରୀର ପୂର୍ବ ଦିଗରେ ଠିକ୍ ସେହି ନଦୀ ଖଣ୍ଡିରେ ପୁରାତନ ଦିନରେ ଗୋଟିଏ ବଡ଼ ଗ୍ରାମ ଥିଲା । ଏହି ଗ୍ରାମକୁ ଲୋକେ ସେହି ସମୟରେ "ଖମ୍ବାରପା" ବୋଲି କହୁଥିଲେ । ପ୍ରାକୃତିକ ଶୋଭାରେ ଏ ଗ୍ରାମଟି ଭରପୁର ରହିଥିଲା । ନିବିଡ଼ ଅରଣ୍ୟର ଭେଦରେ ଏ ଭୂମିର ଆବିର୍ଭାବ । ଶସ୍ୟ ଶ୍ୟାମଳା ଏ ଭୂମିରେ ଯେଉଁମାନେ ନିଜର ଲହୁ ଦାନ କରିଥିଲେ ସେମାନଙ୍କ ମଧ୍ୟରେ ଗରତିଆ "ବଧାର ଗାଁ" ଅନ୍ୟତମ । ଏହି ଗାଁ'ଟିକୁ ନୂଆଁ ଜୀବନ ଦେବାରେ ବଧାର ଗାଁ ଏକ ପ୍ରଶ୍ନବାଚୀ ? ମହାରାଜ ବୈଜଲ ସିଂହଙ୍କ କୃପାଦୃଷ୍ଟି ଏହାଙ୍କ ଉପରେ ଥାଏ । ତାର ପ୍ରମାଣ ସ୍ୱରୂପ

ରାଜା ପରମାନ୍‌ପୁର ଜମିଦାରୀ ଏହାଙ୍କୁ ପ୍ରଦାନ କରିଥିଲେ । ଆଜି କାଲି ମଧ୍ୟ ଏହାକୁ ପରମାଣପୁର ବୋଲି ଲୋକେ କହନ୍ତି । ଗିରିନଦୀ ବେଷ୍ଟିତ ଏହି ଭୂମି ବିସ୍ତୀର୍ଣ୍ଣ ହରିତାସ୍ୟମାନ । ଏବେ ହୀରାକୁଦ ବନ୍ଧ ଯୋଜନାର ଏକ ପ୍ରଧାନ କେନାଲ ଏ ଭୂମିରେ ଜଳରାଶିକୁ ମାକଡ଼ସା ଜାଲ ବୁଣିଲା ପରି ଛନ୍ଦି ପକାଇଛି । କେଉଁଦିନ ଲୋକେ କଣ ଥିଲେ । ଆଜି ମାତ୍ର ଏଠାରେ ଏକ ନୂତନତ୍ୱର ଉଜ୍ଜ୍ୱଳ ଦାଗ ଦେଖା ଯାଉଅଛି ।

ବୁଝିଲୁ ବନ୍ଧୁ ଏ ଭୂମିରେ ଏକ ଦିବ୍ୟ କିମ୍ବଦନ୍ତୀ ଲୋକ ମୁଖରେ ଶୁଣାଯାଏ । ତୁ ଜଣେ ପଳାୟନବାଦୀ ପ୍ରେମିକ ତୁ ଶୁଣିବା ଯଥାର୍ଥ ହେବ ।

ଶରତ୍‌···ତୁ କଣ ଏଥିରେ ମୋତେ ଯୋଡ଼ିଲୁଣି, ସତ କୁହ ତୁ କଣ ଜଣେ ପଳାୟନବାଦୀ ପ୍ରେମିକ ନୁହଁ ? ବିବେକ···ମୁଁ ତୋ ମତ ସହ ଏକମତ ନୁହେଁ । ମୁଁ ପଳାୟନବାଦୀ ନୁହେଁ ବରଂ ରକ୍ଷଣଶୀଳ । ସେ ଯାହାହେଉ ସୁନ୍ଦର କଥାଟିଏ ଆରମ୍ଭ କରିଛୁ··· କହୁନୁ ।

ଏ ଯେଉଁ ପୋଖରୀ ହୁଡ଼ାରେ ଶ୍ରେଷ୍ଠ ଦେଉଳଟା ଅଛି···ଅତି ପୁରୁଣା, ଏହାର ସୃଷ୍ଟି ଏଠି କିପରି କେଉଁଥି ପାଇଁ ଏଠାକାର ପୁରୁଣା ମାନେ ମଧ୍ୟ କହନ୍ତି ଏହା ଏକ ନିଗମ କଥା ।

ବୋଧହୁଏ ଏହାରି ଉପରେ ତୋର ବ୍ୟାଖ୍ୟାନ, ହଁ ଠିକ୍ ଲକ୍ଷ୍ୟ କରିଛୁ ଲୋକ କଥା ଏହାରି ଉପରେ କିମ୍ବଦନ୍ତୀ ରହିଛି ।

ଆମ୍ଭେ ସନ୍ଧ୍ୟା ପୂର୍ବରୁ ଏ ସ୍ଥାନ ଛାଡ଼ିବା, ଏ ଯେଉଁ ସ୍ଥାନରେ ଆମେ ଏଠି ଅଛୁ, ଏହାକୁ ମାଳଗୁଣ୍ଡି କହନ୍ତି । ଏହିଠାରେ ଆମକୁ ସନ୍ଧ୍ୟାସୁନ୍ଦା ବସ୍ ମିଳିବ । ହାତରେ କିଛି ସମୟ ଅଛି ଚାଲ ମାଳଗୁଣ୍ଡିରେ ବସି ଏ ଦେଉଳ କଥା କହିବି ବେଶ୍ ଭଲ ଲାଗିବ ।

# ଦୁଇ

ପୂର୍ବରୁ କହିଛି ଗରଡଆ ବଧାର ଗାଏଁ ସକଳ ସୁଖର ଅଧିକାରୀ ଥିଲେ ସତ ମାତ୍ର ତାଙ୍କ ଘରକୁ ନୂତନ ଅତିଥି କେହି ହେଲେ ଆସି ନଥିଲେ । ଅନେକ ବିଧି ବ୍ୟବସ୍ଥା ହେଲାପରେ ମଧ୍ୟ କେହି ଆସିଲେ ନାହିଁ । ବୟସ ବଢ଼ିବା ସଙ୍ଗରେ ମନର ସରାଗ ମଧ୍ୟ ଊଣା ପଡ଼ିଲା । ଈଶ୍ୱର କଷ୍ଟ ହେଲେ ନାହିଁ···କଷ୍ଟ ଚିନ୍ତା ନାହିଁ··· ତାଙ୍କ ପରେ କାହାକୁ ? କାହାକୁ ଗୋଟିଏ ତ ଅଧିକାରୀ କରାଇବେ । ମନେ ମନେ ଉତ୍ତରାଧିକାରୀ ଖୋଜିବାରେ ଲାଗିଥାନ୍ତି । ଏକ ଦିନର ଘଟଣା, ଗରଡଆ ବଦାର ଗାଏଁ ଗ୍ରାମକୁ ଫେରୁଛନ୍ତି ମାଳତୀ ନଦୀବନ୍ଧ ଉପରକୁ ଉଠିଲା ପରେ ଦେଖିଲେ ଗୋଟିଏ ଦୋମୁହିଁ ଛକରେ ବହୁଲୋକ ଜମା ହୋଇଛନ୍ତି । କଥା କଣ··କେଉଁଆଡୁ ଗୋଟିଏ ସୁନ୍ଦର ଯୁବତୀ ନାନା ଲଙ୍କାର ଜଡିତା, କୌଣସି ଏକ ଉଚ୍ଚକୁଳ ସମ୍ଭୂତା ଅଶ୍ୱଭ ପରିସ୍ଥିତିର ସମ୍ମୁଖୀନ ହୋଇ ଏଠି ଆସି ଝିଅଟିଏ କାଲି ରାତିରେ ଜନ୍ମ କରିଛି ଏବଂ ଜନ୍ମର ପରେ ଯତ୍ନର ଅଭାବରୁ ମୃତ୍ୟୁ ମୁଖରେ ପଡ଼ିଅଛି । ସଦ୍ୟ ଜନ୍ମିତ କନ୍ୟାଟିଏ ଜୀବିତ ଅଛି । ଏ ଘଟଣା ଦେଖି ତାଙ୍କର ମନେହେଲା, ଏ ବଧୂଟି କୌଣସି ବର୍ଗୀ ବିତ୍ତପାତ୍ରର ଅଧୀନ ହୋଇ ମୃତ୍ୟୁକୁ ବରଣ କଲା ।

ଏହି ସମୟରେ ମରହଟ୍ଟାମାନେ ଏ ବିଶାଳ ଭୂଖଣ୍ଡକୁ ବର୍ଗୀ ଆକ୍ରମଣର ତାଣ୍ଡବ ଭୂମି କରିଥିଲେ । ଏ ବର୍ଗୀମାନେ ଦଳ ଦଳ ହୋଇ ପର୍ବତମାନଙ୍କ ଆଡୁଆଳରେ ଗିରିକନ୍ଦର ମାନଙ୍କରେ ରହୁଥିଲେ, ପ୍ରତି ଦଳରେ ଜଣେ ଲେଖାଏ ସରଦାର ରହୁଥିଲେ । ଏ ସରଦାରମାନେ ଦଳର ସର୍ବେ ସର୍ବା ଥିଲେ । ସରକାର ଆଦେଶ ଅବମାନନା କରିବା ଏମାନଙ୍କ ପାଇଁ ଏକମାତ୍ର ଦଣ୍ଡ ମୃତ୍ୟୁହିଁ ଥିଲା । ଏଣୁ ଏମାନେ ବଡ ନିଷ୍ଠୁର ଥିଲେ । ଏମାନେ ନିଜକୁ ସୁଦୃଢ଼ ସାଞ୍ଜୁରେ ସଜ୍ଜିତ ରଖୁଥିଲେ । ନାନା ପ୍ରକାର ଅସ୍ତ୍ର ଶସ୍ତ୍ର ଏମାନେ ବ୍ୟବହାର କରୁଥିଲେ । ଏମାନେ

ଗୁପ୍ତ କମାଣ (ବନ୍ଧୁକ) ମଧ୍ୟ ବ୍ୟବହାର କରୁଥିଲେ । ଏମାନେ ଅନ୍ତ ଦ୍ରୁତଗାମୀ ଶିକ୍ଷିତ ଟଟ୍ଟୁ ଘୋଡ଼ାମାନଙ୍କ ସାହାଯ୍ୟରେ ଆକ୍ରମଣକୁ ଆସୁଥିଲେ । ଏମାନଙ୍କ ଅତ୍ୟାଚାରରେ ଶହ ଶହ ଗ୍ରାମ ଭସ୍ମିଭୂତ ହୋଇ ଯାଉଥିଲା । ଏମାନେ ଲୋକଙ୍କୁ କାଙ୍ଗାଳ କରି ଧନରତ୍ନ ଲୁଣ୍ଠନ କରୁଥିଲେ । ଏମାନଙ୍କୁ ଧରିବା ବଡ଼ କଷ୍ଟକର ଥିଲା । ଏମାନେ କେବେହେଁ ସମ୍ମୁଖ ଯୁଦ୍ଧ କରୁ ନଥିଲେ । ଏମାନଙ୍କ ଯୁଦ୍ଧ ପ୍ରବୃତ୍ତି ବଡ଼ ଲୁକ୍କାୟିତ ରହୁଥିଲା (ଗରିଲା ଯୁଦ୍ଧ) । ଏହି ବର୍ଗୀମାନଙ୍କୁ କରାୟତ୍ତ କରିବା ପାଇଁ ବହୁ ପ୍ରଚେଷ୍ଟାର ଆବଶ୍ୟକ ରହୁଥିଲା । ଏମାନଙ୍କ ପ୍ରତିରୋଧ ପାଇଁ, ସମ୍ବଲପୁର ରାଜା ସେ ସମୟରେ ଜମିଦାରମାନଙ୍କୁ ଅଖଣ୍ଡ ଅଧିକାର ଦେଇଥିଲେ । ଯେ ଯେତେ ବର୍ଗୀ ବିରୋଧ କରି ପାରୁଥିଲା ସେ ସେତେ ସମ୍ମାନୀତ ହେଉଥିଲା । ଗରତିଆ ବିଧାର ଗାଁଏ ଏ ବର୍ଗୀ ନିରୋଧରେ ଅଗ୍ରଣୀ ଥିଲେ । ଏଣୁ ଅପହୃତା ଯୁବତୀ ନିର୍ଘୃତ ବର୍ଗୀ ପୀଡ଼ନରେ ମୃତ୍ୟୁଲାଭ କରିଥିବାର ଜାଣି ସନ୍ତପ୍ତ ହୃଦୟରେ ଯୁବତୀର ସତ୍କାର କରାଇ ନବଜାତ କନ୍ୟାଟିକୁ ନିଜ ଗୃହକୁ ଘେନି ଯାଇ ନିଜ ସ୍ତ୍ରୀ ଉରମାଲେଙ୍କୁ ଦେଇ କହିଲେ···ଆମେ ଅପତ୍ୟ ଶୂନ୍ୟ ଥିବାରୁ ଦୟାମୟ ଏହାକୁ ଦାନ କରିଛନ୍ତି । ଏହାରିହିଁ ଲାଳନ ପାଳନ କରିବା···ଯେତିକି ଆନନ୍ଦ ମିଳିଲା ।



## ତିନି

ଗରତିଆଙ୍କ ଆଦର ସ୍ନେହରେ କନ୍ୟାଟି ସୁନ୍ଦର ସୁହାଗରେ ବଢ଼ିଲା । ଦିନକୁ ଦିନ ଆଖିକୁ ଅତି ରୁଚିର ହୋଇ ଉଠୁଥାଏ । ଗରତିଆ ଶୋହ୍ଲାରେ ନା ଦେଲେ "ସିନ୍ଦୁରପା" ସିନ୍ଦୁର ଫରୁଆଟାଏ । ଲୋକେ ବି ଡାକିଲେ ତା ଘରେ ବାହାରେ "ସିନ୍ଦୁରପା" ଗରତିଆ ଝିଅ "ସିନ୍ଦୁରପା" ଏ ଗାଁର ଗୋଡ଼ି ମାଟି ଗଗନ ପବନରେ ଚହଟିଲା ।

ସିମିତ ମନେହେଲା ଏ ଗାଁକୁ ସରଗରୁ କେଉଁ ଅପସରା ଖସି ପଡ଼ିଛି··· । ଜମିଦାର ଝିଅକୁ ଅଭାବ କଣ ଅଛି । ହାତ ପତାଇଲେ ଚନ୍ଦ୍ର ଆସେ । ଗାଁ ଯାକ ବଚସ୍କର, ଚନ୍ଦ୍ରକଳା ସିନ୍ଦୁରପାର ଛଇ ଚହଟିଲା ଗାଁ ଗଣ୍ଡା ଡେଇଁ ଡେଇଁ କେଉଁ ଦୂର ଦୂରାନ୍ତକୁ । ଏ ଗ୍ରାମର ତଟିନୀ ମାଳତୀ ଯେପରି ହାସ୍ୟ ଲାସ୍ୟମୟୀ ଏ ଗାଁର ସିନ୍ଦୁରପା ମଧ ଠିକ୍ ତାର ଆଉ ଏକ ରୂପ । ଏବେ ଏମାନେ ସଙ୍ଗାତ ହେଲେଣି, ନଦୀକୂଳ, ତୋଟା ବାଲିମାଳ, ସବୁଠି ସିନ୍ଦୁରପାର ପାଦୁଣ୍ଡ ପଡ଼ିଲାଣି କିଏ ଏ ଗୋଟାକୁ ଛୁଇଁବ ସେ ବି ଏକ ଭାବିଲେଣି । ରଜାଘର ଝିଅ ସାଙ୍ଗସାଥି, ଚଟ୍ଶାଳୀ, ମାହାଲୀରେ ପଢ଼ିବା ବୟସ ଟପିଲା, ଜନ ରହେ ନାହିଁ ପାଣି ସୁଅପରି ବହିଗଲା । ଏଣିକି ଲବଣୀ ସିଉଲାଠାରେ ଲଜ୍ଜାବନ୍ତୀ କଥା ଶିଖିଲାଣି । ରୂପକୁ ଗୁଣ ଯାଦୁବିଦ୍ୟା ମଧ୍ୟରେ ଥଆ ହେଲା । ବୁଲିବା ଚଦ୍ରଟ ଝିଅର ବନ୍ଦ ହୋଇଗଲା । ଆଖି ବୁଲୁଥାଏ ମନ ରାଇଜକୁ ଚୀର । ପାଖ ଲୋକ କେତେ ସାଙ୍ଗସାଥି ଦୂରେଇ ଯାଉଛନ୍ତି ତେବେ ମଧ ବେଳ ଅବେଳର ଯାଜଯାଜାରେ ସଙ୍ଗାତ ସୁଆଙ୍ଗ ଗଳ୍ପ ଉଠେ । ନଈ ଗାଧୁଆ, ପୁଷ୍କରଣୀରୁ ପଦ୍ମତୋଳା ଆଉ ଆମ୍ବ ତୋଟାରେ ଗୀତ ମଉଛବ କରିବା କମଶ ଆଉ ନାହିଁ । ଦାଣ୍ଡଦୁଆର ନହିଁ ଅଗଣା ବାଡିପଟ ବଗିଚା ଗୁହାଳ ସାହାଳାରେ ଘେର ଭିତରେ ଘୁରିବୁଲେ । ସିନ୍ଦୁରପା, ରାତ୍ରି ଆସିଲେ ଗୀତା, ଭାଗବତ, ରାମାୟଣ, ମହାଭାରତରେ ମନ ଲଗାଇଲା, କେବେ ପୂଜାଥାଳ ଧରି ଶିବାଳୟ ଯାଏ । ଝିଅ ଆଉ ମୁହଁରେ କଥା କହୁ ନାହିଁ ଆଖି ଓଠ ଭ୍ରୁଲତାରେ ମନ କଥା ବାଢ଼ୁଛି । ସତେ ଯେପରି ଏକ ଲାଜକୁଳୀ ଲତା ଟିକିଏ ସ୍ପର୍ଶରେ ଝାଉଁଳି ପଡ଼ିବ ।

ଜମିଦାର ଘରକୁ ବେଳେ ବେଳେ ସାଧୁସନ୍ଥ, ଅତିଥି ଅଭ୍ୟାଗତ ଆସନ୍ତି । ସିନ୍ଦୁରପା ମନଭରି, ଗୀତ ଶିଖିଛି, ତାନ ଲୟ ଧରି ସୁର ତାଳିଦିଏ । ଝିଅର ଗୀତକୁ ବାଦ୍ୟକାର ହାର ମାନନ୍ତି । ସୁରକୁ ତାଳ ଯୋଖି ପାରନ୍ତି ନାହିଁ । "ସିନ୍ଦୁରପା" ଏକ ସଙ୍ଗୀତ ପ୍ରବୀଣା ହୋଇ

ଉଠିଲା । ଗାଁରେ କେତେ ଯାନଯାତ୍ରା ହୁଏ । ବନ୍ଧୁ ବାଦ୍ୟକାର ସଙ୍ଗୀତକାର ଠୁଳ ହୁଅନ୍ତି । ସିନ୍ଦୁରପା ସେମାନଙ୍କୁ ଡାକ ହୁଏ । ଗରଡିଆ ଝିଅ ପାଖରେ ସଙ୍ଗୀତଜ୍ଞ କଳାକାର ହାର ମାନନ୍ତି । ଓସ୍ତାଦ ସଙ୍ଗୀତଜ୍ଞ ମତ ଦେଲେବି ସିନ୍ଦୁରପାକୁ ଜିତିବା କେବେ ସମ୍ଭବ ନୁହେଁ । ଜଣା ପଡୁଛି ଏ ଦିନେ ନା ଦିନେ ବିଖ୍ୟାତ ସଙ୍ଗୀତଜ୍ଞଙ୍କର ସମ୍ମାନ ପାଇବ । ଝିଅ ମନକୁ ମନ ଗୀତ ଗାଏ । ସେଥିରେ ସେ ଖୁସି । ନଈ ଦେଖିଲେ ଗୀତ, ପୋଖରୀ ଦେଖିଲେ ଗୀତ । ତୋଟା ଦେଖିଲେ ଗୀତ । ଶିଖରୀ, ଶିଖର କାନନ ପ୍ରାନ୍ତର, ପଶୁପକ୍ଷୀ, ସୂର୍ଯ୍ୟଚନ୍ଦ୍ର ସବୁ ଯେପରି ଗୋରୀର ଗୀତରେ ବନ୍ଧା, ସିନ୍ଦୁରପା ଗୀତ ଗାଇଲେ ଫୁଲ ଫୁଟେ, ଫୁଲ ଲୁଚେ । ପବନ ହସେ କାନ୍ଦେ, ଗୋରୀର ଆଖିର ଗୀତ ଛନ୍ଦର ଗୀତ କିଏ ଶୁଣିବାକୁ ଭଲ ନ ପାଏ । ଅତିଥି ଅଭ୍ୟାଗତ, ଯୋଗୀ, ଭିକାରୀ ଯେ ଆସନ୍ତି ଗରଡିଆ ଦାଣ୍ଡରେ ଟିକିଏ ଛିଡ଼ା ହୁଅନ୍ତି ।

କିଏ ଦେଉଛି ମୂର୍ଚ୍ଛନା ପାରିମାନେ ଗୁମୁରି ପାରନ୍ତି ନାହିଁ । ଶୁକ, ପୀକ, ବଣି, ସାରି ମଧ୍ୟ ଗୀତ ଶୁଣନ୍ତି, କେହି କେହି କହନ୍ତି ଦାନ-ପୁରୀଟିଏ ଏଠିକି ଆସିଛି ।

କନ୍ୟାର ବୟସ ବଢିଲା, ଗନ୍ଧର୍ବୀଟିଏ, କିଏ ଯାକୁ ବାହା ହେବ । ଗରଡିଆ ରାଜ୍ୟ ସାରା ବୁଲିଲେ ଝିଅ ଲାଗି ବର କାହିଁ ? କନ୍ୟା କଣ କୁମାରୀ ରହିଯିବ କି ? ଏହାପାଇଁ କୌଣସି ଠାରେ ବର ନାହିଁ । କେତେତ ଦେଖା ଗଲଣି···କାହିଁ ? ଗରଡିଆଙ୍କ ମନ ଭାରି ହୋଇ ଆସୁଥାଏ, କନ୍ୟାର ବୟସ ହେଲା ବିବାହ କରିବାକୁ ହେବ । ପ୍ରଚେଷ୍ଟା ଚାଲୁ ରହିଲା ।

# ଗୃହ

ଚକ୍ର ଘୁରିଗଲା ପରି ଦିନ ଗଡ଼ିଗଲା, କନ୍ୟାର ଅାଖିରେ ବୟସ ହସୁଛି । ସଦାବେଳେ ଗୋଟିଏ ଦମ୍ପତ୍ତିଙ୍କର ଏହି ଚିନ୍ତା ନଥିଲା ତ କିଛି ଭଲରେ ଚାଲୁଥିଲା ଯଦି ମିଳିଲା କନ୍ୟାକୁ ବର ନାହିଁ ? ଶିବ ପୀଠରେ ଏତେ ପୂଜାପାଠ ଲକ୍ଷ ଲକ୍ଷ ଚମ୍ପା ଚଢାଣ, ମହେଶ ଶୁଣିଲେ ନାହିଁ । ଉମା ମଧ୍ୟ ଶୁଣିଲେ ନାହିଁ । ପିକ କଣ୍ଠୀର ଗୀତ ଶୁଣିଲା ମାତ୍ରେ ଏ ଦମ୍ପତ୍ତି ମ୍ରିୟମାଣ ହୋଇ ଯାଉଥିଲେ ।

ପୂର୍ବରୁ କୁହାଯାଇଛି ସାମୟିକ ବର୍ଗୀ ଆକ୍ରମଣ କରିଥିଲା । ବର୍ଗୀ ସରଦାରମାନେ, ଏହି ଗରଡିଆ ବିଧୀର ଗାଁକୁ ଅତି ଭୟ କରୁଥିଲେ । ଏ, ବିଚକ୍ଷଣ ବିପ୍ରର ବୁଦ୍ଧିରେ ଧୁରନ୍ଧର, ପ୍ରଜା ପାଳନରେ ମଧ୍ୟ ସେପରି କର୍ମ ଦକ୍ଷ ଏବଂ ଶତ୍ରୁ ସଂହାରଣରେ ମଧ୍ୟ କୃତାନ୍ତ ସମ ଥିଲେ··· । ଏଣୁ ଏହାଙ୍କ ଭୟରେ ବର୍ଗୀ ସରଦାରମାନେ ଗୁପ୍ତ ବେଶରେ ଗାଁ ମାନଙ୍କୁ ପ୍ରବେଶ କରି ଗୁପ୍ତରେ କାମ କରୁଥିଲେ । ଅନୁକୂଳ ଅବସ୍ଥା ବୁଝିଲେ ଦଳେ ଦଳେ ଆକ୍ରମଣ ପାଇଁ ଉଦ୍ୟତ ହେଉଥିଲେ ।

ବିଧିର ବିଧାନ ଅନ୍ୟ ପ୍ରକାର । ଏକଦା ଜନୈକ ବର୍ଗୀ ସରଦାର ଏକ ବିଚକ୍ଷଣ ତରୁଣ ଦକ୍ଷ ବର୍ଗୀ ସୁବେଦାରକୁ ଗୁପ୍ତଚର ବୃତ୍ତିରେ ଗମ୍ଭାର ପାଖ ପଠାଇଲେ, ସୁବେଦାର ଅତି ସାବଧାନରେ ମାଳଗୁଣ୍ଡିରେ ଅବସ୍ଥାନ କରି ରାତିରେ ଗରଡିଆ ଚିହ୍ନକୁ କେତେକ ମାତ୍ର ବର୍ଗୀଙ୍କ ସାହାଯ୍ୟରେ ପ୍ରବେଶ କଲେ ରାତି ଗମ୍ଭୀରରୁ ଗମ୍ଭୀର ହେଉଥିଲା, ଗାଢ଼ ନିଦ୍ରା ସମସ୍ତଙ୍କୁ ପାଇଥିଲା । ଅସ୍ତ୍ରଶସ୍ତ୍ର ସଜ୍ଜିତ ବର୍ଗୀମାନେ କେତେକ ପ୍ରହରୀଙ୍କୁ କାବୁ କରି ଜମିଦାରଙ୍କ ଗୃହରେ ପ୍ରବେଶ କଲେ । ଏହି ସମୟରେ କୃଷ୍ଣ ପକ୍ଷଥିଲା, ବୋଧହୁଏ ଅଷ୍ଟମୀ ଚନ୍ଦ୍ର ଉଠୁଥିଲା ଓ ମନ୍ଦାଏ ଜ୍ୟୋତ୍ସ୍ନା ଦ୍ୱିତାଳର ଗବାକ୍ଷ ଭେଦ କରି ସିନ୍ଦୁରପା ଶଯ୍ୟା ନିକଟରେ

ପଡ଼ୁଣୁ ଯାଇଥିଲ । ସିନ୍ଦୁରପା ଏକ ମଧୁର ସ୍ୱପ୍ନରେ ବିଭୋର ଥିଲ । ତାକୁ ଶୁଭୁଥିଲା କେଉଁ ଦୂର ଦିଗନ୍ତରୁ ମନ ମାଳଡ଼ାର ଆଉ ପଞ୍ଚ ଏକ ଢବ୍ୟ ଶିଂଘାର ରସମୟ ମଧୁର ଧ୍ୱନି, କିଏ ଧରିଛନ୍ତି ଶିଂଘା, କେତେ ତାନ ମାନରେ ଫୁଙ୍କୁଛି ଏ ଶିଂଘା ।

ସିନ୍ଦୁରପା ନିଦ ସହସା ଭାଙ୍ଗିଗଲା, ସୁପ୍ତିଲ ମଧୁର ନିନାଦ ତାକୁ ଡାକିଥିଲ ଏକେ ମୂର୍ଚ୍ଛିତ ଶିହରଣ ଦେଇ । ଗୋଟି ଦେଖିଲା ଚନ୍ଦ୍ରିକା ତା ଦୀପ୍ତ ମୁଖମଣ୍ଡଳକୁ ଛୁଇଁ ହସୁଛି । କବଣ୍ଡ ଝଟତ ମଲ୍ଲୀ ମହକରେ ବଧୁରୀ ଡାକିଲ ଏକ ମଧୁର ରାଗିଣୀ । କାନ୍ତ ବରହିତ ବନ ବିହଗୀର ବାଣୀ ଛନ୍ଦେ ଛନ୍ଦେ ଉଚ୍ଛୁଳି ଉଠିଲା । ସିନ୍ଦୁରପାର ମାତାଲ କଣ୍ଠରେ ।

ଗୁରେ ସିଂ, ଗୁରେ ସିଂ, ପୁଣି ଥରେ ଗୁରେ ସିଂ, ଆରେ ଏ ଜଣ, ଏ ବର୍ଗୀ ସରଦାର ଗୁରେ ସିଂ ନା ଆଉ କିଏ··· ପାଖକୁ ଯାଇ ଡାକିଲା ··· ଗୁରେ ସିଂ···ଗୁରେ ସିଂ ·· ଚମକି ପଡ଼ିଲ ଗୁରେ ସିଂ ।

ସୁବେଦାର ତୁ ଜୀବିତ ନା ମୃତ, ତୁ ଏଠି ପଥର ପିତୁଳା କାହିଁକି ? ତୁ ଜଣ ଏଠାକୁ ଗୀତ ଶୁଣିବାକୁ ଆସିଛୁ । କାଲି ସକାଳେ ସରଦାରକୁ କଣ ଜବାବ ଦେବୁ ?

ଅରିଓ ··· ଅରିଓ ତୁ କଣ ଏ ମଧୁର ଗାନ ଶ୍ରବଣ କରି ପାରୁନୁ ···? ହଁ ଶୁଣି ପାରୁଛି, ସେଥିରେ ଆମର କଣ ଅଛି । ସରଦାରକୁ କାଲି ଜବାବ ଦେବାକୁ ପଡ଼ିବ ··· କାମ କେତେଦୂର ? କେଉଁ ବାଟ ସୁଗମ ହେବ କେତେ ବର୍ଗୀ ଦରକାର, ଏହା ନ ଜଣାଇଲେ ସରଦାର ମୁଣ୍ଡ ରଖିବ ନାହିଁ । ତୁ କାମରେ ଖିଲାପ କରି ସଂଗୀତ ଶୁଣୁଛୁ । ଏଥିରେ ପଶିଲୁ କାହିଁକି ? ତୁତ ସଂଗୀତ ଶୁଣୁନୁ ତୋନ୍ତେ ସଂଗୀତ ଶୁଣିଲଣି, କାମ ସହଳ ସାରି ଯିବା, ରାତ ପାହିଯିବ । ଅଇରେ ତୁ ସଂଗୀତରୁ କିଛି ବୁଝି ପାରୁ ନାହୁଁ ? ଏ ବହୁଛି ତା ମନ

ଗହନର କଥା, ଦେଉଛି ତା ପ୍ରିୟଙ୍କୁ ଆହ୍ୱାନ । ମାଳତୀ ବୃନ୍ଦାବନରେ ଗୋଟିଏ ମଲ୍ଲୀ ମାଳ ଦେବ ତାର ପ୍ରିୟଙ୍କୁ, ଏ ଜହ୍ନ ସାକ୍ଷୀ ହୋଇ ତାଙ୍କୁ ଦେଖିବ, ଏହି ତାର ଗାନ ... ଗୁରେ ସିଂ ତୋତେ ବିପଦ ଅନିବାର୍ଯ୍ୟ । ହୋସରେ ଆସ କାମ କର । ଏ ସଙ୍ଗୀତରୁ ତୋତେ କଣ ମିଳିବ ।

ଅଇରେ ଏ ସଙ୍ଗୀତ ନ ସରିବା ପର୍ଯ୍ୟନ୍ତ ମୁଁ କିଛି କରି ପାରିବି ନାହିଁ, ମୁଁ ପୂର୍ଣ୍ଣ ମାତ୍ରାରେ ଅବଶ ହୋଇ ପଡ଼ିଛି । ଜାଣୁ ଅଇରେ ସନ୍ଧ୍ୟା ଦେଖି ଭ୍ରମର ପଦ୍ମିନୀ କୋଳରେ ଶୋଇଯାଏ, ସତରେ ସେ ସକାଳୁ ଅବଶ ହୋଇଥାଏ । ନଚେତ୍ ମୃତ ହୋଇଥାଏ । ମୋର କିଛି ମଧ୍ୟ ଯଦି ମୁଁ ପୂରା ମାତ୍ରାରେ ଶୁଣିବି, ହୁ, ଚୁପ୍ ଚୁପ ଏଠି ଛୁଟା ହୋଇଥା ଅନ୍ଧକାର ଥିବା ମଧ୍ୟରେ ଏଠୁ ଯିବା ଆଜି ଆମକୁ କଷ୍ଟ କରିବାର ନାହିଁ । ଗୁରେ ସିଂ... ହଁ ସର୍ଦ୍ଦାର ଝୁଣ୍ଟି ନାଠି ସବୁ ପଡ଼ିରବ ... ଜଲ୍ଦିତ ଫେରିବ । ଶୁଣିବ ନାହିଁ ତାଙ୍କ ତୋ ଉତ୍ତର କଣ ଅଛି, ପରେ ବୁଝିବା ... ସ୍ୱର ଲହର ବନ୍ଦ ହୋଇ ଆସିଲା । ବର୍ଗୀ ସୁବାଦାର ମନଭରି ଗୀତ ଶୁଣିଲା ... ଶିଂଘାରେ ସେ ଦେବ ତାର...ଏହି ସୁର...ଏହି ତାନ ଏହି ମାନ... । ପୁଣି ମନେ ବିଗୁର କଲା...ଯାହାର ସୁର ଏତେ ମିଠା ତାଙ୍କୁ ଟିକିଏ ଦେଖିବ । ଏ କଅଁଳ ମାତାଲ ସୁରକୁ କେଉଁଠୁ କପର ଦେଖିବ । ନଚେତ୍ ଜୀବନର ସବୁ ବାକି ରହିଯିବ । ଆସନ୍ତା କାଲି ହିଁ ଆସିବ । କପର ଆସିବ ? ଯୋଗୀ ବେଶରେ, ଶିଂଘାରେ ଯୋଖି ଦେବ ତାର ସୁର, ତାର ତାନ, ଆଉ ତାହାର ମାନ... । ଏହା ଶୁଣିଲେ ନିଶ୍ଚୟ...ନିଶ୍ଚୟ ସଙ୍ଗୀତ ରସିକା ଆସିବ ମୋହିତ ପାଖକୁ । ନୟନ ପୂରାଇ ଦେଖି ନେବ ... ନୟନ ପୂରାଇ ଦେଖି ନେବ ... ମଦାଳସା ଆଖିରେ କଣ କହିବ ଦେଖିବ ତାଙ୍କୁ ।



# ପାଞ୍ଚ

ମୁଁ ଯାହା ଜାଣିଲିଣି ଗୁରୁ ସିଂ ଧରା ହୋଇ ତୁ ମାରା ଯିବୁ ଆଉ ମୋତେ ମଧ୍ୟ ଡହଡରେ ଯୋଗିବୁ । ଅଇରେ ତୁ ମୋର ଏକ ମାତ୍ର ସାଥୀ-ମିତ୍ର-ବନ୍ଧୁ, ତୋ ବିନୁ ମୋର ଆଉ କିଏ ଅଛି । ତୁ ମୋତେ କଷ୍ଟସ୍ତ ସାହାଯ୍ୟ କରିବୁ । କାଲି ଆସି ଏ ସଙ୍ଗୀତ ରସିକାକୁ ଦେଖି ନେବ··· । ସରଦାରଙ୍କୁ କହିବା ସବୁ ଠିକ୍ ଅଛି । ଆଗକୁ କିଛି କାମ ହେବ, ତେବେ ତରବରିଆ କିଛି ଠିକ୍ ନୁହେଁ । କିଛି ସମୟ ଦରକାର ।

ଅନୁସନ୍ଧାନ ପାଇଁ ସୁଯୋଗ ମିଳିବ···ଏହିଠାରେ କିଛି ଦିନ ରହିବାକୁ ହେବ··· । ଅରଓ କହିଲ ଗୁରୁ ହିଂ ··· ତୁ ହିଁ ମୋର ସରଦାର, ସୁବେଦାର, ସାଙ୍ଗ ସାଥି ସବୁ କିଛି ଯାହା ଅବଶ୍ୟ କରିବ । ମାତ୍ର କିଛି ଭଲ ଦେଖିପାରୁ ନାହିଁ । ଗୋଟିଏ କଥା ଏ ସଙ୍ଗୀତ ରସିକା କଣ ତୋ ପାଇଁ ଆଉ ସଂଗୀତ ସୁର ବାଜିବ । ମୁଁ କିଛି ବୁଝି ପାରୁ ନାହିଁ ତୋର ଏ ପାଗଳାମି ଏତେକ ବେଳେ କାହିଁକି ? ···ହଁ···ହଁ ଅଇରେ ତୁ ଠିକ୍ କହୁଛୁ ମୁଁ ଏକ ପାଗଳ ହୋଇ ଉଠିଛି···ମୁଁ ଶିଂଘା ବଜାଇଲେ ସେ ଗାଇବ, କଷ୍ଟସ୍ତ ଗାଇବ ପ୍ରାଣ ଭରି ଗାଇବ ।

ଠିକ୍ ଚିନ୍ତା କରି ପାରୁଛି ସେ ଦେବ··ସୁର ବାଜିବ ଏହି ସୁରର ମହିମା, ମୋ ଶିଂଘାରେ ଅମିତ ଶକ୍ତି ଅଛି । ତାକୁ ସେ ଧରିନେବ···ତୁ ଦେଖିବୁ ।

ସକାଳ ଦଶ ଘଣ୍ଟା ସମସ୍ତ କିଏ ଦୁଇଜଣ ଯୁବକ ଅଳ୍ପ ବୟସର ଜଣା ପଡୁଅଛି, ଏମାନେ ଯୋଗୀ ଦାଣ୍ଡରେ ଭିକ୍ଷା କରୁଛନ୍ତି । କଣ ମାଗୁଛନ୍ତି କେଜାଣେ ? ବୋଧହୁଏ କାହାକୁ ଖୋଜୁଛନ୍ତି, ଦେଖିବାକୁ ତ ବେଶ୍ ସୁନ୍ଦର, ଜଣେ କଣ ଶିଂଘା ବାଦନ କରୁଛି ଅନ୍ୟ ଜଣଙ୍କ କହୁଛି ଅନେକ ଦୂରରୁ ଆସିଛୁ । ଆଜ ଦିନକ ଏଠି ବିଶ୍ରାମ ନେବୁ । କାଲି ପ୍ରଭାତରୁ ଯିବୁ ।

ହେଉ ଯଦି ଯୋଗୀ ବୋଲି ବିଚାର କରୁଥାଅ ତେବେ ତାଙ୍କ ପାଇଁ ଦେଉଳରେ ପ୍ରସାଦର ବ୍ୟବସ୍ଥା କରିଦିଅ । ଏତିକି କହି ଗିରିଧାରୀ ଭିତରକୁ ଗଲେ । ନିକଟରେ ଗଡ଼ ଚଣ୍ଡି ମନ୍ଦିର ଥିଲା । ବିଶ୍ରାମ କକ୍ଷରେ ପ୍ରସାଦ ସେବନାନ୍ତେ ଏମାନେ ବିଶ୍ରାମ ନେଲେ ।

କେହି ଜଣେ ଶିଂଘା ବାଦନ କରୁଛି, ଏ କଣ ଶିଂଘାରେ ସଙ୍ଗୀତ ରସ ଚପୁଡ଼ା ହୋଇଛି କି ? କେତେ ଚମତ୍କାରିତା ଏ ସ୍ୱର ଲହରୀ । ସବୁ ନିର୍ଭର କରିଲା ଗୃହ ଗୃହ ମନ୍ଦିର ନିକଟରେ କେତେ ଶ୍ରୋତା ଦର୍ଶକ ରୁଣ୍ଡ ହୋଇଗଲେ । ଶିଂଘା ବାଦନ ଚାଲିଛି ଗୋଟିଏ ସ୍ୱର...ଗୋଟିଏ ତାନ ଆଉ ଗୋଟିଏ ମାତ୍ର ଲୟ ।

"ମାଲିକାରୁ"...ମାଲିକାରୁ...ଶୁଣୁଛ, ଶୁଣୁଛ ଏ ଶିଂଘା ବାଦନ କିଏ ଧରିଛି...ଶିଂଘା କିଏ ଧରିଛି ।



## ଛଅ

କାଲି ରାତିରେ ଏହି ଶିଂଘାର ଧ୍ୱନି ଶୁଣିଥିଲି । କାହା ଏ ବାଦନ । ମୋର ସ୍ୱର ଅବିକଳ ନକଲ ଏ, ମୋର ତାନ ମୋର ଲୟ, ଠିକ୍ ମିଳି ଯାଉଛି ଏ କିପରି କାହୁଁ ଜାଣିଲା ଏ ସ୍ୱର, ଏ ତାନ ଓ ଲୟ "ମାଲିକାରୁ" ଏ କଥା...ଚାଲ ମୁଁ ଦେଖିବି ସେ କିପରି ଶିକ୍ଷା କଲା ଏ ସ୍ୱର...ଏ ରାଗ ଓ ଏ ରାଗିଣୀ ।

ସିନ୍ଦୁର୍ପା ତୁ କଣ ପାଗଳୀ, ସେ ପରି ଯୋଗୀ ପୁଅଟିଏ, ମନ୍ଦିରରେ ରହଣି କରିଛି । ସେ ତାର ପ୍ରସାଦ ସେବନ କରି ବାଦ୍ୟ ବଜାଉଛି ତୁ କାହିଁକି ସେଠାକୁ ଯିବୁ । ବାବା ଜାଣିଲେ କିଛି ଭଲ କଥା ହେବ ନାହିଁ ।

ଭଲ ନ ହେଉ ମୁଁ ଯିବି ··· ଯିବି ସେ ଏହି ସୁର, ଛନ୍ଦ ବନ୍ଧ, ଯୋଗ ରାଗିଣୀ ତାନ ମାନ ମୋତେ ଶୁଣିଛି, ଏ ତାର ନୁହେଁ ଆଜି ଆସିଛି ମୋତେ ଶୁଣାଇବାକୁ । ଗୁଲ ମାଳିକାରୁ ଗୁଲ ଦେଖିବା ସେ କିଏ ବଜାଉଛି । ଆମ୍ଭେ ଯିବା ଚଣ୍ଡି ଦର୍ଶନକୁ ଯେତେବେଳେ ଟିକିଏ ଦେଖି ନେବା ତାକୁ···ନା ନା ସେଠାକୁ ଯିବା ନାହିଁ । ସଦାବେଳେ···ଏ କାଳକୁ ଝିଅ ବହୁଙ୍କ ଭୟ ରହିଅଛି, ବାବାଙ୍କ କଡ଼ା ହୁକୁମ୍ ଅଛି । ବାଟ, ଦେଉଳ ମଣ୍ଡପ କଥା, ତୋଡା ଘାଟ ବାଟକୁ ଯାଇଛି ନ ବଗିଚା କୁଆଡ଼େ ଯିବା···ବର୍ଗୀଙ୍କର ଭୟ ଅଛି ତ ? ତୋତେ ବର୍ଗୀ ଭୂତ ଲାଗିଛି । ଏ ଧନ ଧନ୍ତୁରାବରେ ବର୍ଗୀ ଜବନରେ ଭୟ ନାହିଁ ଆସିବେ । ଆମେତ ଦେଉଳକୁ ଯିବା, ସଙ୍ଗରେ ତୁ ଯିବୁ···ସଙ୍ଗରେ ଆଉ ଦୁ ଜଣକୁ ମଧ୍ୟ ନେଇ ଯିବା ।

ସିନ୍ଦୁରପା ମୋ ବାରଣ ମାନୁ ନାହଁ ମୁଁ ତୋର ଦାସୀ···ଯିବି ଗୁଲ । ମୁଁ ଯୋଗ ସାମ୍ରାଜ୍ୟମ ସଜାଇ କରି ଆଣୁଛି···ତୁ ସଜ ହୋଇ ପଡ଼ । ଯିବି କହୁଁ କଥା ନାହିଁ ।

କି ମଧୁର ଏ ବାଦନ କେଉଁଠୁ ଶିଖିଲେ, ଏମାନେ ଯୋଗୀ ନା···ତେବେ ପ୍ରେମ ସଂଗୀତ ତଆର । ଏ ତ ଯୋଗୀ ସଂଗୀତ ନୁହେଁ । ଏତ ମିଳନର ଆହ୍ୱାନ ଦେଉଛି ଶିଂଘାରେ କେହି ଜଣେ ଛଦ୍ମ ବେଶୀ ନିଶ୍ଚୟ ଆସିଛି ମୋତେ ସଂଗୀତରେ ପରାସ୍ତ କରିବାକୁ । ମୁଁ କଦାପି ପରାସ୍ତ ହେବି ନାହିଁ । ସିନ୍ଦୁରପା ତୁ ଯଦି ହାରିଯାଉ···କିଏ କହିଲୁ ମାଳିକାରୁ ···ତେବେ ଶୁଣ ଯଦି ହାରିଯାଏ ତେବେ କାୟ-ମନ-ବାକ୍ୟ ସବୁ ଦେଇ ହେବି ତାର ଦାସୀ—ଏହା ମୋର ଶପଥ—ଶପଥ ଶୁଣିଲୁ କାଳିକାରୁ ଏହା ମୋର ଦୃଢ଼ ସଂକଳ୍ପ··· ।

ସିନ୍ଦୁରପା ଆ···ସବୁ ଠିକ୍ ହୋଇଗଲା ମନ୍ଦିର ମୁଖଶାଳା ନିକଟରେ ଦୁଇଜଣ ଗୈରିକ ବସନଧାରୀ ରୁଦ୍ରାକ୍ଷ ମଣ୍ଡନ ଅନୁପମ ସୁନ୍ଦର

ଯୁବକ ବସିଛନ୍ତି । ଜଣେ ଶିଂଘା ବାଦନରତ ଅନ୍ୟ ଜଣକ ତାନ ଓ, ଲୟକୁ ଲକ୍ଷ୍ୟ କରି ଆଉ କାହାରି ଅନୁସନ୍ଧାନରେ ଥିବାରି ଜଣା ପଡୁଅଛି । ସିନ୍ଦୁରପା ଓ ମାଳାଦାରୁ ଦୁଇଜଣ ଦେଖି ଦର୍ଶନ ଛଳନାରେ ସଂଗୀତଜ୍ଞଙ୍କ ନିକଟରେ ପହଞ୍ଚିଲେ ।

ଅପୂର୍ବ ରାଗ ରାଗିଣୀ···ଅପୂର୍ବ ମୂର୍ଚ୍ଛନା ପରିବେଶ ମନ୍ତ୍ର ମୁଗ୍ଧ ସିନ୍ଦୁରପା ଅକ୍ଷିରେ ଗୁରେ ସିଂର ଆଖି ମିଶିଗଲା···ତାନକୁ ଲହରର ଯୋଗ·· ଯୋଗ ପରି । ଗୁରେ ସିଂ କହିଦେଲା ତାର ମନ କଥା, ସିନ୍ଦୁରପାର ହସା ଆଖି ଅତି ଗୋପନରେ କେତେ କଥା ବୁଝିଲା । ··· ସିନ୍ଦୁରପା ଜିତିଲେତ ? ଗୋଟିଏ ଦିନରେ ସଂଗୀତ ରସିକାକୁ କଣ ଜିଣି ହେବ । ···ବହୁ ବରଷ ମାଗୁଛି ।

ଯୋଗୀ ଅପୂର୍ବ ଶିଂଘା ନାଦ କରୁଛନ୍ତି ସତ···ମାତ୍ର ଗୋଟିଏ ସୁର···ଗୋଟିଏ ତାନ ଆଉ ଗୋଟିଏ ଲୟ···ସେ କଣ ଆଉ କିଛି ଜାଣେ ନା ?

ହଁ ମୁଁ ଏ ସୁର ମାତ୍ର ଗତ ରାତ୍ରରେ ଶିକ୍ଷା କଲି··· । ଗତ ରାତ୍ରରେ କେତେ ବେଳେ···କେଉଁଠି । ଗଭୀର ରାତ୍ରରେ ଅଷ୍ଟମୀର ଚନ୍ଦ୍ର ନଇଁ ଆସୁଥିଲା ।

ତମେ ଥିଲ କେଉଁଠାରେ ହଁ ଏକ ମାନସ କୁଞ୍ଜରେ । କାଏ ତମେ ମୋ ସଂଗୀତ ଲହରି ଆମ ସୌଧ ଡେଇଁ ଯାଇ ପାରିବ ନାହିଁ ତ ? ତେବେ ଶିକ୍ଷା ହେଲା କପରି । ମିଥ୍ୟା ମିଥ୍ୟା ତମେ ଜାଦୁଗର···ତମେ ତମ କଥାରେ ଇନ୍ଦ୍ରଜାଲ ରଚିଅଛ ।



## ସାତ

ଯୋଗୀ ତମେ ଆଉ ଏକ ସୁର ତମ ଶିଂଘାରେ ଦେଇ ପାରିବ ? ହଁ ପାରିବ । ସିନ୍ଦୁରପା ଦେଲା ସୁର···ଶିଂଘା ଦେଲା ଅବିକଳ ତାର ତାନ ଓ ମାନ ଆଉ ଲୟ ମଧ୍ୟ ଆଶ୍ଚର୍ଯ୍ୟ ଏ ସାଧକ । ଗରଡଆ କନ୍ୟା ପୁଣି ଏକ ରାଗରେ ଦେଲା ତାର ମୂର୍ଚ୍ଛନା ଆଉ ଗୁରେ ସିଂ ଦେଲା ଶିଂଘାର ପ୍ରତିଧ୍ୱନି ସିନ୍ଦୁରପା କିଛି ବୁଝି ପାରିଲାନି ··· ଏତ କମ୍ ସାଧନା ନୁହେଁ ଯୋଗୀର ପରୀକ୍ଷା ଭଜନ···ଗୁରେ ସିଂର ତାନରେ ସିନ୍ଦୁରପା ଥରି ଉଠିଲା···ପୁଣି ଗୁରେ ସିଂହ ମନ୍ଦିର ଭରା ଆଖିରେ କହିଦେଲା କିଛି···ସିନ୍ଦୁରପା ତୁ ମୋର ତୁ ମୋର ··ନା ନା ଏପରି ହୋଇ ପାରିବ ନାହିଁ, ଯୋଗୀ ତୁ ହାରିଯିବୁ ସିନ୍ଦୁରପାକୁ କାଢିବା ତୋର ଅଧିକାର ନାହିଁ । ଯୋଗୀ ତୁ କେତୋଟି ମାତ୍ର ଛନ୍ଦ ଦେଲୁ ତୋ ଶିଂଘାରେ ଆହୁରି ବହୁତ କିଛି ଅଛି ।

ଏହି ସମୟରେ ସୂର୍ଯ୍ୟ ପଶ୍ଚିମ ଆକାଶକୁ ଓହ୍ଲାଇବାକୁ ବସିଲେଣି । ଯୋଗୀ ଦୁଇଜଣ ମାଳଗୁଣ୍ଡ ରାସ୍ତାରେ ହଜିଗଲେ । ସିନ୍ଦୁରପାର ଆଖି ଲମ୍ବି ଯାଇଥିଲା କାପାଇଁ · ସେ ଆଦୌ ଜାଣିପାରି ନ ଥିଲା । ଏକ ନିର୍ବାକ୍ ମୂର୍ତ୍ତି ସିନ୍ଦୁରପା ··· ମାଲାକାରୁ ଡାକିଲା ·· ହଁ ହଁ ଚାଲିଯିବା ବହୁତ ସମୟ ହେଲାଣି ଗୃହରେ ଚହଳ ପଡିବଣି ସିନ୍ଦୁରପା କାହିଁ ?

ତୋତେ କଣ ସେମାନେ ନେଇଗଲେ ସିନ୍ଦୁରପା ହଁ ସେମାନେ ମୋତେ ନେଇଗଲେ । ସେହି ଶିଂଘା ନାଦତ ଶୁଭୁଛି ··· ସିନ୍ଦୁରପା··· ସିନ୍ଦୁରପା ତା-ନା ଗୁରେ ସିଂ ·· ଆଉ ତା ସାଥି ନାମ ଓରିଓ ଏମାନେ କେଉଁଠିକାର ଲୋକ କଥାବାର୍ତ୍ତାରୁ ତେଜରୁ ଜଣା ପଡୁଛି ଏମାନେ କେହି ଉଚ୍ଚ ବଂଶ ଜାତ ଛଦ୍ମ ବେଶରେ ସିନ୍ଦୁରପାକୁ ଦେଖିବାକୁ ଆସିଥିଲେ ନଜର କରିବାକୁ ଆସିଥିଲେ । ଏମାନେ ପୁଣି ଆସିବେ ସିନ୍ଦୁରପା ତ ପୁଣି କାହାକୁ ନଜର କରିବ । କେତେ ଚିନ୍ତା ଦେଇଗଲେ

ଏମାନେ···ମୁଁ ରଜାଣିଅ ଅସମ୍ଭବ ଏ ମିଳନ ନା-ନା କେବେ ନୁହେଁ ଏ ଭେଦ ମଣିଷ ତିଆରି କରିଛି ନିଜ ସୁବିଧା ଦୃଷ୍ଟିରୁ ।

ମାଳାକାରୁ କହିଲା ଯାହାହେଲା··ହେଲା ଚାଲ ଯିବା ବେଳ ଗଡ଼ି ଗଲାଣି ।

ମାଳାକାରୁଂ ପଚାରିଲା ତୋର ଗାନ···ତୋର ତାନ ଏକ, ତୋ ଆଖି ତା ଆଖି ମଧ୍ୟ ଏକ, ତୁ ଭୂମିରେ ଗାର ଟାଣୁଥିଲୁ । ଆଉ ସେ କଣ କରୁଥିଲା ଶିଂଘାକୁ ଯୋରରେ ଧରିଥିଲା କାଳେ ଖସି ପଡ଼ିବ । ହିଁ ସାଥି କଣ କରୁଥିଲା ସେ ଆଉ କଣ କରିବ ତମ ଦୁଇଜଣଙ୍କୁ ମନଭରି ଦେଖୁଥିଲା ତୁ କଣ କରୁଥିଲୁ···ମୁଁ···ମୁଁ ହିଁ ତୁ, ତୋତେ ଦେଖୁଥିଲି ମିଛ କଥା ତୁ ଦେଖୁଥିଲୁ ତୋ ସାଥି ଓରିଓକୁ ଅରିଓକୁ ମିଛ··ମିଛ ··।

ସିନ୍ଦୁରପା···ଗୁରେ ସିଂ କହୁଛି ପୁଣି ସାତଦିନ ପରେ ସେ ଏହି ମଣ୍ଡପକୁ ଆସିବ ଓ ମନ୍ଦିର ଆଗରେ ମୋ ପାଖରେ ଶିଂଘା ବାଦନ କରିବ । ପୁଣି ଆସିବ ଆମୁ···ସେ କେବେ ଜିତି ପାରିବ ନାହିଁ । ସେ ହାରିଯିବ ପଳାଇବ ତାକୁ ତଡ଼ି ଦେବ ମୋ ସୁର ।

ନା-ମ ତାକୁ ଡାକ ଆଣିବ ତୋ ସୁର, ତୋତେ ଥଟ୍ଟା ଲଗୁଛି "ମାଳାକାରୁ" ।

କି ଗଭୀର ଚିନ୍ତାରେ ବାଟ ସରିଗଲା ଅସରନ୍ତି କଥା ସେ କେବେ ସରିବ । ସିନ୍ଦୁରପାର ଗୀତ ଆଉ ଗୁରେ ସିଂର ତାନ କୁସୁମ ବାସନାରେ ଚହଟିଲା । କଥା ମଧ୍ୟ ଚନେଇଲା ମନ୍ଦିର ମଣ୍ଡପ ବାଟ ଘାଟ ନଈ ପୋଖରୀ ତୋଟା ତୁଠ ସବୁଠି ସେହି କଥା । ସିନ୍ଦୁରପାର ଗୀତ ଗୁରେ ସିଂର ···। ଆରେ ଏମାନେ କଣ ମିଳିଯିବେ କିଏ କହିବ କଣ ଭବିଷ୍ୟ ରହିଛି ?

ସିନ୍ଦୁରପା ସୁର ଦିଏ ଆଉ ଗୁରେ ସିଂ ଶିଂଘା ବଜାଏ । କିଏ

କାହାକୁ ହରାଇବ ବାଜରେ ବାଜ ରହନ୍ତି ।



# ଆଠ

ଗୁରେ ସିଂ ଠିକ୍ ଠିକ୍ ଶିଂଘା ବଜାଏ, ସେ ହାରେନା···ଶିଂଘା ବାଜେ ନଈ କୂଳେ, ଶିଂଘା ବାଜେ ତୋଟା ମୂଳେ, ଶିଂଘା ବାଜେ ଶିଖଖରେ—ବାଜେ ପୋଖଖରେ···ଆଉ ସୁର ଦିଏ "ସିନ୍ଦୂରପା" ।

କମେ ଏ ସୁର—ତାନ କମଶ ଲଗି ହୋଇ ଅସୁଛନ୍ତି··· ବ୍ୟବଧାନରେ ଅତିଷ୍ଠତା ବଢ଼ିଛି, ଭଲ ପାଇବାର ଶେଷ କେଉଁଠି ମଧ୍ୟ ପ୍ରଶ୍ନ ହେଲଣି ! ଦିଓଟି କଅଁଳ ହୃଦୟ ମଧ୍ୟରେ କେବଳ ଆଖିର ମିଳନ ଭାବର ମିଳନ ନଭୃତ ସ୍ୱପ୍ନିଳ ମିଳନ ସବୁ ମୂର୍ଚ୍ଛନା ଢ଼ାଳି ଦିଏ ସିନ୍ଦୂରପା ସବୁ ତାନ ତୋଳି ଧରେ ଶିଂଘା, ଏମାନେ କୁଣ୍ଡଳୀରେ ଭରି ଉଠି ଯାଆନ୍ତି କେଉଁ ଏକ ଅଜ୍ଞାତ ଅନ୍ତରୀକ୍ଷକୁ ।

ସିନ୍ଦୂରପା ଆଉ ଶୋଇପାରେ ନା ଖାଇପାରେ ନା, ଯାଇପାରେ ନା ସବୁଠି ସେ ଶିଂଘା ଶୁଣୁଛି···ମନେ କରେ । ମୋତେ କିଏ ପାଗଳମୀ କଲା ।

ଫୁଲ ଫୁଟିଲେ ବାସ ଚହଟେ, ଏ କଥା ଗରଡିଆ କାନ ପର୍ଯ୍ୟନ୍ତ ଗଲା ଯୋଗୀ ସଙ୍ଗେ ଭାବ । କନ୍ୟାତ ଗେହ୍ଲା ଯାହା କୁହିଛି ମନେଇବ କିଏ ? ବୁଝାଇ କହିଲେ କଣ ହେବ, ଭୟ ଦେଖାଇଲେ କଣ ହେବ । କଣ କରିବାକୁ ହେବ, ସଙ୍ଗୀତ କଳାକୁ ଭଲ ପାଇବା କଣ କିଛି ଖରାପ କଥା ··· ତା ବୋଲି ଘର ବର୍ଣ୍ଣି କଣ ଠିକ୍ , କୁଳଶୀଳ ବଡ଼ୁର ତ ଅଛି ଯୋଗ୍ୟ କି ନୁହେଁ ବସୁରତ ଅଛି । ତେବେ ଦୈବୀ ନିର୍ଦ୍ଦେଶକୁ କଣ ଅଛି ।

କନ୍ୟା କାହା ଚନ୍ତାରେ ବ୍ୟଥିତା···ଗାୟକ ଯୋଗୀ ଚନ୍ତାରେ ତାକୁ ତା ପାଖରୁ ବିଦା କରାଯାଇଥିଲା ତେବେ ମନରୁ ତ ନୁହେଁ··· । ତାହାହେଲେ ସେ କଣ ପୁଣି ଆସିଲାଣି··· । ଲୋକେ କହନ୍ତି ଗୁରେ ସିଂ ଆଉ ଗ୍ରାମ ଭିତରକୁ ଆସୁ ନାହିଁ··· । ନଈ କୂଳେ ରହେ, ତୋଟା ମୂଳେ ବସେ ସେଠି ତାର ଶିଂଘା ବଜାଏ···ଭିକ୍ଷା କରି ଚଳେ ··· ଏ ଶିଂଘା ବଜାଇବା ତାର ଅଭ୍ୟାସ ସେଥିରେ ତାର ଅପରାଧ କ'ଣ··· ଆମେ ସଂଯତ ରହିଲେ ହେଲା ।ସିନ୍ଦୁରପା ଏକ ପାଗଲୀ···ଗରଡ଼ିଆଙ୍କୁ କହେ ଗୁରେ ସିଂ ମୋତେ ଜିତି ପାରିବ ନାହିଁ । ହାରି ପଳାଇବ,ଏଥିରୁ କ'ଣ ବୁଝାଯାଏ, ଗରଡ଼ିଆ ଆଶ୍ଚର୍ଯ୍ୟ ହୁଅନ୍ତି ,ଝିଅ କାହିଁକି ଏକଥା ବାର ବାର ପଚାରୁଛି, ସେ ଯାହା ଗାଇବ ଗୁରେ ସିଂ ତାହା ବଜାଇ ପାରିବ ନାହିଁ ଏ ଅଦ୍ଭୁତ ବାଜି ଯୋଗୀ ତା ବାଟରେ ସିଏ ତୋର କଣ, ଅଛି । କନ୍ୟାକୁ ଗରଡ଼ିଆ କହନ୍ତି ଆମେ ଆମ ବାଟରେ ରହିବା କନ୍ୟାକୁ ଶିଘ୍ର ବିବାହ କରାଇଦେବା । ଉପଯୁକ୍ତ ବର କାହିଁ ଖୋଜିବାକୁ ହେବ ।

ଶିଂଘା ଯେଉଁଠି ବାଜିଲେ ମଧ୍ୟ ସିନ୍ଦୁରପା ଶୁଣିପାରେ ଅନ୍ୟ କେହି ଶୁଣି ପାରନ୍ତି ନାହିଁ । ଫାଲ୍‌ଗୁନ ଶୁକ୍ଳ ପକ୍ଷର ପୂର୍ଣ୍ଣ ଚନ୍ଦ୍ର ଆକାଶ ମଝିକୁ ଆସି ନାହିଁ । ଦକ୍ଷିଣ ମଳୟ ଥରି ଥରି କହୁଛି । ମଲ୍ଲୀର ନୂଆ ମହକ ମନ ଛୁଇଁଲାଣି ।ଅମଳ ଧବଳ ରାତିରେ ·ସୌଧ ଉପରେ ସିନ୍ଦୁରପାର ଧବଳ ଉଢ଼ଣୀ ଉଡ଼ୁଛି । ନଈକୂଳ ଆଡୁ ଆସିଲା ଶିଂଘାର ଲହର କେତେ ଉଚ୍ଛ୍ୱସିତ ହୋଇ ଉଠୁଛି । ଆହ୍ୱାନ ଦେଉଛି ସିନ୍ଦୁରପା···ତୋତେ ମୁଁ କେତେ ଡାକିବି, ତୋ ପାଇଁ ମୁଁ ସବୁ ହାରିଛି । ମୁଁ ସୁବେଦାର ଥିଲି ମୁଁ ଗଡ ନାୟକ ଥିଲି, ମୁଁ ବାପା, ମାର ଗୋଟିଏ ପୁଅ ତୋଠୁ ଗେହ୍ଲା । ତୋତେ ଖୋଜୁଛି ଭିକ ମାଗୁଛି··· ଭିକ ମିଳିବନି ? ତୁ ହଁ କି ନା ପଦେ କହ , ଜାଣୁଛି କହିବୁ ମୁଁ ତୋଠି ହାରିନି , କାରଣ ତୁ ମୋତେ ତଡ଼ି ଦେଇ ପାରିନି । କେଉଁଠୁ ? ତୋ ମନ ଭିତରେ ମୋ ଶିଂଘାରେ ତୋ ଧବଳ ଉଢ଼ଣୀ କହୁଛି ଆ··ଆ ମୋ ପାଖକୁ ଆ··· ।

ରାଜ ଗମ୍ଭୀର ହେବାରେ ଲାଗିଛି ମାନ ଶିଂଘା ବାକୁଳୁ ତାର ଶେଷ ନାହିଁ ।



## ନଅ

ଯୋଗୀ ରାଜକନ୍ୟା ପାଇଁ ବ୍ୟାକୁଳ-ବାମନର ଚନ୍ଦ୍ର ଆଶା ବାତୁଲ ଏ ଯୋଗୀ, ଲୋକେ କହନ୍ତି ଭଲ ଆମ ଗରଢାଆ ଝିଅ ତାକୁ ଯୋଗ ବର ଲୋଡ଼ା । ଶିଂଘା ତାନ ସଶ ସର ଆସିଲା ସିନ୍ଦୁରପା ଆସିଲା ନାହିଁ ।

ସମସ୍ତେ ଶୋଇଗଲେ ଗାଢ଼ ନିଦ୍ରାରେ, ଆକାଶ ପାତାଳ ନଦୀ କାନନ ପ୍ରାନ୍ତର ସମସ୍ତେ ଶୋଇଗଲେ । ଆକାଶରେ ଚନ୍ଦ୍ର ଟିକ ଟିକ ତାରମାନେ ବୃକ୍ଷଲତାରେ ଲୁଚ ଆଶ୍ରୟ ନେଇ ଥିବା ପକ୍ଷୀ, ଝିଲ୍ଲୀର ଝଙ୍କାର ସମସ୍ୱର ଜାଗ୍ରତ ପ୍ରହରୀ ପରି ମୁଖର କରୁଥାନ୍ତି । ଏକ ଶାନ୍ତ ଗମ୍ଭୀର ରଜନୀକୁ ଗାନ୍ତ କରୁଥାଏ ଏ ଝିଲ୍ଲୀରବ । ଏକ ପଥର ଗୁମ୍ଫାମ ତଳେ ଦୁଇ ଜଣ ବନ୍ଧୁ ଗୁରେ ସିଂ ଓ ଅରଓ ।

କାହିଁ ତୋର ସିନ୍ଦୁରପା ତ ଆସିଲା ନାହିଁ ତୁ କହୁଥିଲୁ ସେ ଆସିବ ନିଶ୍ଚୟ ଆସିବ ମିଥ୍ୟା ହେଲା ତୋ କଥା ନା···ନା··· ।

ଆଉ ସିନ୍ଦୁରପା ଆସିବ ନାହିଁ ଚାଲ ଫେରିଯିବା । ଅରଓ ଶୁଣ ! ସେ ଆସିବ··· ସେ ଆସିବ ·· ସେ ଆସିବ ସେ ହାର ଯିବ ନାହିଁ ବୋଲି ଆଯୁ ନାହିଁ । ତାର ଜନ୍ୟ ହେଉ ସେଥିରେ ମୋର ଆନନ୍ଦ ମାନ । ସେ ଥରେ ହେଲେ ଆସୁ, ଶେଷ ସାକ୍ଷାତ ହେଲେ ଦେଉ··· ତାକୁ ନ ପାଇଲେ ମୁଁ ଆଉ ଫେରିବି ନାହିଁ ଓରଓ ।

ଯେଝି ପଥର ଚଟାଣ ଉପରେ ଶୋଇଗଲେ ଦୁହେଁ । ଶିଂଘା ମୁଣ୍ଡ ଉପରେ ଥୋଇ । ଆକାଶକୁ ଚାହିଁ କହିଲା ଗୁରେସିଂ, କଏ ଯେପରି

ଭିତରୁ କହୁଛି ଏ ଚନ୍ଦ୍ର ଖୁବ୍ ସୁନ୍ଦର ମାତ୍ର ହେଲେ ସିନ୍ଦୂରପା ଠାରୁ ନୁହେଁ । ମୋ ଶିଂଗାର ନାଦ ଠାରୁ ସୁନ୍ଦର । ମୁଁ କଣ ତା ଆଖିରେ ସୁନ୍ଦର ଦେଖା ଯାଉଛି ? ରାତ ଶେଷ ପ୍ରହର,ଶୋଇଗଲା ଗୁରେ ସିଂ ।

ଗୁରେ ସିଂ ମୋଟେଲ ଲେଉଟୁଛି ନପାଇ ଶୋଇ ଯାଇଥିବ । ସେହି ପଥର ଗୁନ୍ଦଣୀ ତଳେ, ତା ଶିଂଘାରେ ମୋତେ ଡ଼ାକୁଛି, ମୁଁ ଯିବ ନା ନା ନ୍ଥି- ମୁଁ ଯାଇ ନପାରେ- ମୁଁ କାହିଁକି ଯିବ ? ମୁଁ କଣ ତାକୁ ହିଁ ନା ନା କେବେ ନୁହେଁ । ଏ କଟ, ହୃଦସ୍ପନ୍ଦ ଆଉ କହୁଛି କହୁଛି, ସିନ୍ଦୂରପା ତୁ ତାକୁହିଁ ଭଲପାଉ ସେ ତୋର ଆଉ ତୁ ତାର ମାତ୍ର — । ଥରେ ତୋ କର ସ୍ପର୍ଶ ଦେଇ ତାକୁ ତୃପ୍ତ କର । ଅଛି ତା କପାଳରେ ଏକ ସରୁ ଚନ୍ଦନର ରେଖା, ଅଧରରେ ଲେଖିଦେ ତୋ ସ୍ୱୀକାର ମାତ୍ର ତୁ ମନାକରି ପାରିବୁନ ? ଦେ ତୋ ଉତ୍ତରୀ ତାକୁ, କାକର ବିନ୍ଦୁ ପଡୁଛି ତା ଉପରେ, ପୋଛି ଦେ··· । ସେ ଯିବ କିପରି ଏ ବିଜନ ବେଳାରେ ଏ ବିଜନ ସ୍ଥଳୀକୁ··· ଲଜ୍ଜାବାଉ, ଯଦି କେହି ଦେଖେ ··· ସିନ୍ଦୂରପା ଆଉ ସିନ୍ଦୂରପା ହୋଇ ରହିବ ? ତେବେ କି ଯେ ଚିନ୍ତା । ସିନ୍ଦୂରପା ନବାବ୍ ଆଉ ସମ୍ଭାଳି ପାରିଲାନି ··· ସେ ଯାଇ କଣ କରିବ, ଦେଇ ଆସିବ ତାର ଉତ୍ତରୀକୁ··· ଦେଇ ଆସିବ କପୋଳରେ ଗୋଟିଏ ଲେଖା- ଦେଇ ଆସିବ ପ୍ରାଣକୁ ସିନ୍ଦୂରପା ଯାଇ ପାରେନା··· ରାତି ପାହିଗଲା··· ରାଜକନ୍ୟା ଶୋଇଗଲା ଗୁରେ ସିଂର ମଧୁର ସ୍ୱପ୍ନରେ··· ।

ପରସ୍ଥିତି ଦିନକୁଦିନ ଅପବାଦ ଭରି ହେଲା । ଗୁରେ ସିଂକୁ ଗ୍ରାମ ମନା କରି ଦିଆ ଯାଇଥିଲା ଏଣିକି ସୀମା ମନାକରି ଦିଆଯିବ ।

ଆଜି ଏକ ଆନନ୍ଦର ଦିନ ସିନ୍ଦୂରପାର ସମ୍ବନ୍ଧ ଠିକ୍ ହୋଇଗଲା ବାଣ ଫୁଟିବ, ବାଦ୍ୟ ବାଜିବ ଭୂରି ଭୋଜନରେ ଆକାଶ ପାତାଳ ଚହଲ ପହଲ କାହିଁକି ? ବାହା ହେବ ସିନ୍ଦୂରପା ? କାହାକୁ ଏକ ପ୍ରଶ୍ନବାଚୀ ? ସେ ଜାଣେନା, ସେ ଚହ୍ନେନା, କେଉଁ ଅଜ୍ଞାତ ଅପରିଚିତକୁ ତା'ଡ ସବୁକିଛି କରନ୍ତୁ । ସେ କଣ ନୂଆ ମୋର ତ ସରି ଯାଇଅଛି,

ପୁଣି ଏ କଥା କାହିଁକି ? ଏକ ପଥଭ୍ରାନ୍ତ ଯୋଗୀ ଗୁରେ ସିଂ - ଛି ଛି କି ଲଜ୍ଜାର କଥା, ଗରତିଆ ଝିଅ କି କଥା କରିବାକୁ ଯାଉଛି ।

ସିନ୍ଦୁରପାର ଅମାନିଆଁ ମନ ଆଦୌ ମାନୁନି, ସେ ସବୁ କଥା ଖୋଲି ବାପକୁ କହିଦେବ । ତମେ ଯଦି ମୋତେ ଭଲ ପାଅ, ମୁଁ ବାହା ହେବି ଗୁରେ ସିଂକୁ- ଏ କଥା କିଏ କହିଦେବ- କାହିଁକି ନୁହେଁ ? କନ୍ୟା କିଏ କରିବାକୁ ଯାଉଛି, ମାନ ସମ୍ମାନ ଗଲା ।

# ଦଶ

ପୁଣି ରାତ୍ରି ଆସିଲ, ସିନ୍ଦୁରପାର ଗବାକ୍ଷ ଖୋଲି- ପୁଣି ଚନ୍ଦ୍ରମା ରାତି ତଳେ ଟିକି ଟିକି ତାରା ହସିଲେ, ମଲ୍ଲୀ ହେନାର ମହକ, ଲହର ଛୁଟାଇଛି । ସିନ୍ଦୁରପାର ଶରୀର ମାତ୍ର ପଲଙ୍କରେ ଅଛି , ମନ ତାର ଗୁରେ ସିଂ ପାଖରେ । ନିଦ ନାହିଁ- ପୁଣି ସେଇ ଚମକ ବାଜିଲା । ଅତି ଅତୁରରେ ଡାକୁଛି । ସିନ୍ଦୁରପା ଆ, ନ ଆସିଲେ ବଞ୍ଚିବି ନାହିଁ । ନଈ ସେ କଳରୁ ଚକ୍ରବାକୀର କାନ୍ଦଣା ଶୁଭିଲା । ଆକାଶରେ ଧଳେ ବଗ ଉଡ଼ି ଯାଉଥିଲେ, ମାଳତୀ କୂଳ ପଥର ଚଟାଣ ଉପରେ ଗୁରେ ସିଂ ଦେଉଛି ଶିଂଘାର ତାନ- ସେହି ଏକ କଥା ସିନ୍ଦୁରପା ତୁ ଆସିବୁ ନି ? ତେବେ ଗାନ ଶୁଣାଇଲୁ କାହିଁକି ? ମୁଁ ଆଉ ବଞ୍ଚିବି ନାହିଁ । ମୁଁ କିଏ ଆଗ ଗୁରେ ସିଂ ଅଛି । ମୋର ସମସ୍ତ ଶକ୍ତି ଶେଷ ହୋଇ ଯାଇଛି । ମୁଁ ଆଉ ଛିଡା ହୋଇ ପାରୁ ନାହିଁ । ମୁଣ୍ଡ ବିଭ୍ରମ ଧରିଲାଣି- ତୁ ଥରେ ମୋତେ ଦେଖି ଯାଉନୁ । ଶିଂଘା ଅତି ଯୋରରେ କେତେ ସମୟ ପାଇଁ ବାଜିଲା । ନଦୀ ବହିଗଲା ତାର ସୁରରେ । ପକ୍ଷୀ ଉଡିଗଲେ, ଚନ୍ଦ୍ର ନଇଁ ଗଲେ- । ବାସ ଚହଟିଲା, ସିନ୍ଦୁରପା ଆସି ନାହିଁ । ଆଉ ଆସିବ ନାହିଁ କାଳର କମାଣ୍ଡ ଧରିଲା । ଗୁରେ ସିଂ ଶୋଇ ଗଲା ସେଇ ଚଟାଣ ଉପରେ ଆଉ ଅଳ୍ପ ସମୟ ପରେ ରାତି ପାହିବ ।

ମୁଁ ନଷ୍ଟଯୁ ଯିବ- ମୋତେ କେହି ବାଧା ଦେଇ ପାରିବେ ନାହିଁ । ମୋ ମନ ଉପରେ କାହାର ଅଧିକାର ଅଛି । ସେ ମୋତେ ଖୋଜୁଛି । ଅତି ଆବେଗରେ ଖୋଜୁଛି । ମନର କେଉଁ ଅନ୍ତମ ସ୍ତରରେ ଖୋଜୁଛି । ସିନ୍ଦୁରପା ଦୁଆର ବନ୍ଦ ହୋଇ ପଡ଼ିଲା । ସିନ୍ଦୁରପା ପୈାଧ ଗ୍ଭଡ଼ିଦେଲା, ସିନ୍ଦୁରପା ···ସିନ୍ଦୁରପା ପଛ ପଟୁ କିଏ ଡାକୁଛି, ପାଦ ରହିଗଲା··· ଗରତିଆ କନ୍ୟା ଫେରିଲା ଘରକୁ । ଶୀତଳ ପଦ କମ୍ପିତ କର, ସ୍ପନ୍ଦିତ ହୃଦୟ···ଏକ ମାତ୍ର ମୁଁ ତୋତେ ପାଇ ପାରିବି ଗ୍ଭରେ ସିଂ···ତୋତେ ପାଇ ପାରିବି । ତୁ ଫେରିଆ ।

ଆଉ ବଜାନା···ଆଉ ବଜାନା ମୋ ପାଇଁ ତୁ ସବୁ ଉତ୍ସର୍ଗ କରି ଦେଲୁ ଆଉ ବଜାନା ବଜାନା ମୁଁ ତୋତେ ମଧ୍ୟ ପାଇଲି ନାହିଁ ।

ସୂର୍ଯ୍ୟ ଆକାଶରେ ଉଠିଗଲେ । ପଥର ଚଟାଣ ଉପରେ ପଡ଼ିଥିଲା ଗ୍ଭରେ ସିଂ ଆଉ ତାର ହାଥି ଓରିଓ ।

ଗ୍ଭରେ ସିଂ ଗ୍ଭଲ ଆଜି ଫେରି ଯିବା । ସେ ତୋ ପାଖକୁ କାହିଁକି ଆସିବ । ତୁ କିଏ, ସେ କିଏ, ଏ କଥା ଚିନ୍ତାକରି ପାରୁନୁ । ତୁ ଜଣ ହେଲୁଣି । ତୋତେ ଆଉ ସିନ୍ଦୁରପା ମିଳିବ ? ଗ୍ଭଲ ଫେରିଯିବା··· ଭିକ୍ଷା ମାଗି ଏଠି ପଡ଼ିଥିବା କାହିଁକି ? ସେ ତୋତେ ଗ୍ଭହେଁନା ··· ତା ପାଇଁ ଏ ଚଟାଣରେ ତୁ ଦିନ ରାତି ପଡ଼ି ରହିଛୁ ··· ଗ୍ଭଲ ଗ୍ଭଲ ଫେରିଯିବା ।

ଶୁଣ ଅରିଓ ଆଜି ସେ ଅବଶ୍ୟ ଆସିବ । ଏ ଜଣ ତୋତେ ଜ୍ୱରରେ ଗ୍ଭରେ ସିଂ, ଆମେ ନଷ୍ଟଯୁ ଫେରି ଯିବା ନା ଆଜି ଆସିବରେ ଅରିଓ, ସେ ଆସିବ । ଯଦି ନ ଆସେ ତାହେଲେ କାଲି ଫେରି ଆସିବା ତୋତେ ଜ୍ୱର···ହେଉ ତେବେ ତୁ ଗ୍ଭଲ ଆମ କୁଡ଼ିଆକୁ ସେଠି ଶୋଇ ରହିବୁ ମୁଁ ତୋ ପାଇଁ ଦୂର ଗାଁ ରେ ଏକ ବଡ ବୈଦ୍ୟ ଅଛି ତାରି ପାଖରୁ ଔଷଧ ଆଣିବ । ବାଟ ଦୂର- ଆସିବାରେ ଡେରି ହେବ··କଦାପି ମୋ ଆସିବା ପର୍ଯ୍ୟନ୍ତ ଏଠାରୁ ତୁ ଯିବୁନି ?

ଗୁରେ ଫିକୁ କୁଟୀରରେ ଛାଡ଼ି ଓରଓ ଚାଲିଗଲା- ଦନ ଡମାମ୍ ପ୍ରବଳ ଜ୍ୱରରେ ଗୁରେ ସିଂ ଆଖି ଖୋଲି ପାରନ । ସ୍ୱପ ଆସିଲା ଅରଓ ଫେଗ ନାହିଁ ତାହାହେଲେ କଣ ସେ ବହୁ ଦୂରକୁ ଚାଲି ଯାଇଅଛୁ । ହଁ ସେ କହୁଥିଲା ଦୂର ଗାଁ କୁ ଯିବ-ଆସିବାକୁ ଡେର ହେବ । ସ୍ୱପ ହେଲାଣି ବୋଧହୁଏ ସକାଳେ ଆସିବ । ଗୁରେ ସିଂକୁ ସନ୍ଧ୍ୟାରେ ବୋଧହୁଏ ଟିକିଏ ଭଲ ଲାଗିଲା, କୁଡ଼ିଆ ଦୁଆରକୁ ଆସିଲା । ଦେଖିଲା ତା ଶିଂଘା ତଳେ ପଡ଼ିଛି । ଅତି ଯତ୍ନରେ ଉଠାଇଲା କହିଲା ଶିଂଘାକୁ "ପା" ଠାରେ ହାରିଗଲୁ ··· । ହାରିଗଲୁ ··· କାଲି ଏଠୁ ଚାଲିଯିବା ··· ।

ଅମି.ଅମି ଚନ୍ଦ୍ର ସ୍ୱପି ପୁଣି ଆସିଲା ସିନ୍ଦୁରପା ··· ଉଦ୍‌ବେଳିତ ଆଜି ଶିଂଘା କାହିଁକି ବାଜୁନି ··· କାହିଁକି ବାଜୁନି··· । ତାହାହେଲେ ଗୁରେ ସିଂ କଣ ଏଠାରୁ କୁଆଡ଼େ ଚାଲିଗଲା ·· ନା ସେ ଯାଇ ନ ପାରେ, ଯାଇ ନ ପାରେ···ତେବେ କାହିଁକି ବାଜୁନି···କାଲି ଯେଉଁ ଶିଂଘା ବାଜୁଥିଲା ମଝିରେ ମଝିରେ ବାଦନ ତ ଅଳ୍ପ ପଡୁଥିଲା ତାହାହେଲେ ଗୁରେ ସିଂ କଣ ଅସୁସ୍ଥ—ସ୍ୱପି ଗମ୍ଭୀର ଗମ୍ଭୀର ହେବାକୁ ବସିଲା ।

ଏ କଣ ଶିଂଘା ପୁଣି ବାଜିଲାଣି, ଏତ ମାଳତୀ ଚଟାଣରୁ ଆସୁ ନାହିଁ ଆସୁଛି ଗାଁ ମୁଣ୍ଡ ପଦ୍ମତୋଳା ପୁଷ୍କରଣୀ କୂଳରୁ । ଆଜି କଣ ଶିଂଘାରେ ଶୀଥିଳ ନାଦ···ନା ନା ସେ ଅସୁସ୍ଥ ଅଛି ।



## ଏଗାର

ମୋତେ ଡାକୁଛୁ ଆ ··· ପା ··· ପା ··· ମୁଁ ଆଉ ବଞ୍ଚିବ ନାହିଁ ମୋତେ ଟିକିଏ ସ୍ପର୍ଶ ଦେଇ ଯା ··· । ଗୋଟିଏ ଦରଦୀ ସ୍ୱର ଥରୁଛି ··· ।

ଏ ଶିଂଘାରେ ଭରିଦିଏ ·· ।

ସିନ୍ଦୂରପା ଆଜି ନଷ୍ଟଚନ୍ଦ୍ରିକା ବୁଢ଼ିରେ ଠିକ୍ କରି ଆଜି ସେ ଗୁରେ ସିଂକୁ ସାକ୍ଷାତ ଦେବ । କହିବ ଗୁରେ ସିଂ ଆଜି ପା ହାରିଗଲା··· । ପା··ତୋର, ତୋର ଯାହା ଇଚ୍ଛା କର ଆଉ "ପା" ଫେରିଯିବ ନାହିଁ ··· "ପା" ହାରିଛି "ପା" ତୋର ··· ରାଜ କନ୍ୟା ନୁହେଁ ଯୋଗୀର ଘରଣୀ ·· । ଗୁରେ ସିଂ ତୋ ପାଇଁ ମୁଁ ଅତି ଅନ୍ୟାୟ କରିଛି ତୁ ମୋତେ କ୍ଷମା ଦେବୁ । ସେ ଆଙ୍କି ଦେବ ଗୁରେ ସିଂର କପୋଳରେ ଏକ କ୍ଷୀଣ ଚୁମ୍ବନର ରେଖା ··· । ସେ ହୋଇଯିବ ଗୁରେ ସିଂର ସବୁଦିନ ପାଇଁ । ଆଉ ଗୁରେ ସିଂ ତାକୁ ଭିଡ଼ି ନେବ ଅତି ଯୋରରେ ଅତି ନିବିଡ଼ରେ ମନ ରାଜ୍ୟର କେଉଁ ଅନ୍ତିମ କେନ୍ଦ୍ରକୁ । ଭାବନାର ସୁଅ ଖରସ୍ରୋତା ଗିରି ନିର୍ଝର ତୁଲ୍ୟ ଅତି ଯୋରରେ ଆଗେଇ ଚାଲିଲା । ପୁଣି ଏକ ଶରୀର ··· ଚମକପ୍ରଦ ଚାନ୍ଦିନୀ ତଳେ ଚନ୍ଦ୍ରାମଗ୍ନା "ତା" ଶିଂଘାର ସ୍ୱର ଲକ୍ଷ୍ୟ କରିଛି । ରାତ ଦ୍ୱିପ୍ରହର ଅତିକ୍ରମ କଲା । ସିନ୍ଦୂରପା ଆଜି ଅଭିସାରିକା ନିଜକୁ ମଣ୍ଡିତ କରିଛି ବାସ, ମାଳ, କର୍ପୂର ଚନ୍ଦନରେ ମିନ୍ଦୁରତଳେ, ଆଙ୍କିଛି ଚାନ୍ଦ ମନସ୍ୱୀ ନା ନା ରତ୍ନାଲଙ୍କାର ରଚିତା-କ୍ଷିନ ବସନା ହେମ ଧବଳ ଚାନ୍ଦ ଜ୍ୟୋତ୍ସ୍ନା ଯୁକ୍ତା ହାତରେ ଧରିଛି ମାଳା କାନରେ ବାନ୍ଧିଛି କାନ୍ତି । କାହା ପାଇଁ ତାର ପ୍ରିୟତମ ପାଇଁ ଆଜି ସେ ମିଶିଯିବ କେଉଁ ଅଜ୍ଞାତ ଚନ୍ଦ୍ରୋପଳାର ଦୁଃଖର ସ୍ରୋତରେ ନିଳୟ ନିର୍ଝର ଗିରିନଦୀ ପରି ଆଉ ବହିଯିବ କେଉଁ ସୁନ୍ଦର ରାଜ୍ୟକୁ ଆଉ ଫେରିବନି··· ଆଉ ଫେରିବନି ··· ।

ଏକ ପ୍ରଶାନ୍ତ ଗଗନର ଜ୍ୟୋତ୍ସ୍ନା ତଳେ ପାହୁଣ୍ଡ ପକାଇ ଅତି ସଂଗୋପନରେ "ପା" ଗଲା ପଦ୍ମତୋଳା ପୋଖରୀ ପାଖକୁ ··· ଶିଂଘାର ସ୍ୱର ସ୍ପଷ୍ଟରୁ ସ୍ପଷ୍ଟତର ହୋଇଗଲା ।

ଗୁରେ ସିଂ ଶିଂଘାରେ ଧରିଛି ସିନ୍ଦୂରପା ଆ··ଆ ମୁଁ ଆଉ ଅଧିକ ସମୟ ଏ ସଂସାରରେ ରହିବ ନାହିଁ । ଏକ ସହକାର ତରୁତଳେ ଶ୍ରେଷ୍ଠ

କୁଡ଼ିଆଟିଏ ତହିଁରେ ଅତି କ୍ଳାନ୍ତ-କ୍ଲାନ୍ତ କ୍ଷୀଣ ଯୁବକଟିଏ, ଅତି ଶିଥିଳ ତନୁ ଧରିଛି ଶିଂଘାରେ ମୃଦୁ ତାନ··· ।

ନବନୀତା ଅଭିସାରିକା ରଚନା! ରଚିତା, ଫୁଲ ଚନ୍ଦନ ମାଳ ଧାରିଣୀ ଏହି କୁଟୀର ଦ୍ୱାରରେ ଆକସ୍ମିକ ଆବିର୍ଭାବ ହୋଇଗଲା, ଦେଲା ତାର ନୁପୂର ବାଜେଣି—ଆଉ ମଧୁର ସ୍ୱର ··· ଗୁରେ ସିଂ ମୁଁ ତୋର ମୁଁ ହାରି ଯାଇଅଛି ମୁଁ ଆଜି ତୋତେ ମୋର ନଜର କରିନେବି ସବୁଦିନ ପାଇଁ ଦେ ତୋଳି ଦେ ଗୁରେ ସିଂ ତୋର ପ୍ରଥମ ଦାନ ସ୍ୱୀକାର କର ।

ଏ କଣ ଗୁରେ ସିଂ ଶିଂଘା ଦଉଣ୍ଡୁଛି । ଗ୍ରେଷ୍ଟ ଦୀପଟିଏ ହଲି ହଲି ଯାଉଛି, ଲିଭି ଯିବାକୁ ଗୁରେ ସିଂ ଶିଂଘାରେ ତାନ ଭରି ଦେଲା କିଛି କିଛି ବାଜିଲା ମାତ୍ର ରହିଗଲା ଶିଂଘା । ଆଉ ବାଜିଲାନି । ଏ କଣ ସିନ୍ଦୁରପା ଗ୍ରୀବା ଭିତରକୁ ଆଉଜେଇ ନେଲା ଗୁରେ ସିଂକୁ ··· ଏ କଣ ଏତେ ଜ୍ୱର ··· ସିନ୍ଦୁରପା ··· ପା ··· ପା ପା ଦୁଇଧାର ଲୁହ ଗଡ଼ିଗଲା "ପା"ର ଗ୍ରୀବାରେ ଗୁରେ ସିଂ ଗୁରେ ସିଂ ପା ଭିଡ଼ିନେଲା ଗ୍ରୀବାର ଅତି ଭିତରକୁ "ସିନ୍ଦୁରପା" ଗାଇଲା ପ୍ରଥମ ଦିନର ଗୀତ, ହୃଦୟର କୋହ କମ୍ପନ ··· ବିଜନ ରାଗିଣୀ—ପା ଗାଇଲା ପ୍ରିୟ ମୋର ଶୋଇ ଯାଅ ··· ମୋ ଗ୍ରୀବାରେ ।

ଗୁରେ ସିଂ କହିଲା ଶୋଇଯିବି ସବୁଦିନ ପାଇଁ ଶିଂଘା ବାଜିଲା— ଗୀତ ବି ଶୁଭିଲା··· ।

ଉଷ୍ଣମ ଗ୍ରୀବାରେ ଗୁରେ ସିଂ ଶିଥିଳ ହୋଇଗଲା । ଗୁରେ ସିଂର ଅଗ୍ରହାତ ସିନ୍ଦୁରପାର ଅଧରରେ ବାଜିଲା ଆଉ ବେଶୀ ବେଳ ନାହିଁ । ସିନ୍ଦୁରପା ଚୁମ୍ବି ନେଲା ଥରେ । ଦୀପ ଲିଭିଗଲା ଅନ୍ଧକାର ମଧ୍ୟରେ ସିନ୍ଦୁରପା ମଧ୍ୟ ଢଳି ପଡ଼ିଲା । ଏକ ବିଶାଳ ବୃକ୍ଷକୁ ଅତି ଯୋରରେ ଯାଉଡ଼ି । ଆକାଶରେ ଦୁଇଗୋଟି ପକ୍ଷୀ ଉଡ଼ିଗଲେ ଝାଡ଼ି ଦେଇ ଡେଣା···ରହିଗଲା କଥା···ଏ ପଦ୍ମତୋଳାର ତଳେ ।

ସିନ୍ଦୂରପା ଗୁରେ ସିଂ··· ।

ଦୁଇଟି ମୁକ୍ତାତ୍ମା ରହିଗଲେ ସ୍ମୃତି ନିବିଡ଼ ବନ୍ଧନରେ ଅତି ଶାନ୍ତ ନିଦ୍ରାର କମନୀୟ ଶଯ୍ୟା ପରେ ଆରଦିନ ପୂର୍ବାକାଶରେ ଦିବାକର ଦେଲେ ନୂଆ ରଶ୍ମି, ସଙ୍ଗୀରଙ୍କ ଭରା ପୁଣି ଥରେ ପଥ ପ୍ରାନ୍ତେ ଲୋକାରଣ୍ୟ···ଗରଡଆଙ୍କ ଏକ ପ୍ରଶ୍ନ କଣ ଘଟିଛି··· ।

ଏହି ସେହି ସ୍ମୃତି ସ୍ତମ୍ଭ, ଏହି ସେହି ସିନ୍ଦୂରପା "ଗୁରେ ସିଂ" ଏଠି ନିତ୍ୟ ରାସ ହୁଏ । ମିଳନ ମାଧୁରୀର···ଏ ଏକ ଦିବ୍ୟ ସଙ୍କେତ । ଏଠି ରାତ୍ରରେ ନିତ୍ୟ ଶିଂଘା ବାଜେ । ଏଠି ନିତ୍ୟ ଅଭିସାର ହୁଏ । ଏଠି ଯିଏ ମାଘ ରାତ୍ରିରେ ରହିଣି ଯେ କରିଥାଏ, ସେ ନିଶ୍ଚିତ ଶିଂଘା ବାଦନ ଶୁଣିବ । ଏ ସ୍ମୃତି ସ୍ତମ୍ଭକୁ ଦେଖ···ଦେଖ ଥରେ ଏକ ଶାଶ୍ୱତ ପ୍ରେମର ନିବେଦନ ସ୍ଥଳୀ ଏହାକୁ ଆଗେ ଗୁରେ ସିଂ କହୁଥିଲେ କାଳ କ୍ରମେ ଏହା ଗୁରେ ସିଂହା ଓ ପରେ ପରେ ଏହା·ଗୁଡ଼େ ସିଂହା ନାମରେ ପରିଚିତ ··· ।

ଏ ମାଳତୀ କେତେ ସ୍ମୃତି ଧରେ ଦେଖ···ଏ ବନ୍ଧକୁ ସିନ୍ଦୂରପା କହନ୍ତି ··· ଏହାହିଁ ଭାବ କେନ୍ଦ୍ର ।

ହେଇ ଦେଖ ସୂର୍ଯ୍ୟ ଅସ୍ତମିତ ହେବାକୁ ଗଲେଣି, ଆସ ସମ୍ବଲପୁର ଯିବା ବସ୍ ମଧ୍ୟ ଆସିଲାଣି ··ଶୁଣିଲୁ ତ ପ୍ରେମ କାହାଣୀ । ସତ କହିଲୁ ତୁ ଏକ ପଳାୟନବାଦୀ ପ୍ରେମିକ ନୁହେଁ ? ନା ମୁଁ ଏକ ରକ୍ଷଣଶୀଳ ତୁ ଜାଣୁ ? ହେଉ ଚାଲ୍ ଆଉ କେବେ ଆସିବା ଶିଂଘା ବାଜିବ ଶୁଣିବୁ "ପା" ଆସିବ ଗୀତ ବୋଲିବ ଆଉ ତୁ ମଧ୍ୟ ଫେରିଯିବୁ ସେଠିକୁ··ଯେ ତୋତେ ଡାକୁଛି କିଏ ସେ ? ସେ··ସେ··ସେ କେହି ଜଣେ ? ଜଣେ ପା ନୁହେଁ ତ ?

—*—

## ※ ପଦ୍ମଲୋଚନ ଗ୍ରନ୍ଥମାଳାର ପ୍ରକାଶୋନ୍ମୁଖୀ ଗ୍ରନ୍ଥଚୟ ※

୧ । ଜ୍ୟୋତିଷ କଳାଭାଷ (୧-୪)
୨ । ଭାରତୀ ତାରକ ମଞ୍ଚ
୩ । ଶ୍ରୀ ତାରା ମହାବିଦ୍ୟା
୪ । ସୁରତ ତରଙ୍ଗିଣୀ
୫ । କିଶୋରୀ ରାସେଶ୍ୱରୀ
୬ । ସରସୀ ସୁଧା-ପଦ୍ମ
୭ । ତା' ରଞ୍ଜନା ଝୋଙ୍କ
୮ । ସୁନ୍ଦର କଥାସାର (୨)
୯ । ବିମୁଗ୍ଧା ରୂପାଞ୍ଜନା
୧୦ । କିଙ୍କିଣୀ କିତଶିଳ୍ପୀ
୧୧ । ରଚିତ ରତ୍ନାବଳୀ
୧୨ । ଶ୍ରୀମଦ୍ ସିଦ୍ଧପାଦ
୧୩ । ଭିଷକ୍ କୃତାଞ୍ଜଳି
୧୪ । ମୂର୍ତ୍ତି ମନୋରମା
୧୫ । କବଚ କାଳରୁଦ୍ର
୧୬ । ସୌଭାଗ୍ୟ ଚୂଡ଼ାମଣି
୧୭ । ସୁଦଷ୍ଟ ଧନ୍ୱନ୍ତର
୧୮ । ତ୍ରିଫଳା ସଞ୍ଜୀବନୀ
୧୯ । ସ୍ତବନ ବଗଳାମୁଖୀ
୨୦ । ସ୍ତବନ ନାରାୟଣୀ
୨୧ । ଗାୟତ୍ରୀ ଜ୍ଞାନଯଜ୍ଞ
୨୨ । ସୌଭାଗ୍ୟ ରାଜଲକ୍ଷ୍ମୀ
୨୩ । ସାନନ୍ଦ ପତ୍ରସ୍ୱର
୨୪ । ବିଜୟ ବରଦା ଶ୍ରୀ
୨୫ । ତ୍ରୈଲୋକ୍ୟ ଚିନ୍ତାମଣି
୨୬ । ନାଗଶ୍ରୀ ଗୋରଚନା
୨୭ । ପିୟୂଷ ଭାବବଲ୍ଲୀ
୨୮ । ମଳୟ ନିକେତନ
୨୯ । ବନ୍ଦନା ପଦ୍ମମାଳୀ
୩୦ । ସରାଗ ରସରାଜ
୩୧ । ଅଳଭ୍ୟ ଅର୍ଘ୍ୟ ଦୀପ
୩୨ । ପ୍ରଣୟ ପଞ୍ଚପୁଷ୍ପ
୩୩ । ବିଦଗ୍ଧ ଭାବଦୀପ
୩୪ । ଚନ୍ଦନ ଚୂରୁଚିତା
୩୫ । ବିମୁଗ୍ଧା ମନ୍ଦାକ୍ରାନ୍ତା
୩୬ । କଦମ୍ବ ଶ୍ରୀମଞ୍ଜରୀ
୩୭ । ସନ୍ଧାନ ଯୋଗଯାତ୍ରୀ
୩୮ । ପ୍ରିୟ ସମ୍ବଲପୁର
୩୯ । ଓଁକାର ଉପାସନା
୪୦ । କଲ୍ୟାଣୀ କୁଣ୍ଡଳିନୀ
୪୧ । ସାଧକ ଶିରୋମଣି
୪୨ । ମହାବୀର ଦର୍ଶନ
୪୩ । ମାନେଶ୍ୱର ଦର୍ଶନ
୪୪ । ଆତ୍ମଜ୍ୟୋତି ଦର୍ଶନ
୪୫ । ସନ୍ଥ ଶ୍ରୀ ଦାମୋଦର
୪୬ । କାପାଳୀର ସାକ୍ଷାତ୍
୪୭ । ଜ୍ୟୋତିଷ ପଦେଅଧେ
୪୮ । ପରମାର୍ଥ ଚିନ୍ତନ
୪୯ । ଦେବସ୍ତ୍ରୀଟି ରଂଗ ବୃଟି
୫୦ । ସନ୍ଧାନ ସାତକଥା
୫୧ । ସେ ଦିନ ଗୁପ୍ତକଥା
୫୨ । ସଂକେତ ସୁଧାନିଧି
୫୩ । କୃପାକର କର୍ପୂର

## ପଦ୍ମଲୋଚନ ଗ୍ରନ୍ଥମାଳାର ପ୍ରକାଶିତ ଗ୍ରନ୍ଥଚୟ



